# ପୂଜାରୀ ପରିବାର




# ଦୁଇଟି ଜ୍ୟୋତିଷ୍କ

ପରିବେଷକ

ଲେଫ୍ଟନେଣ୍ଟ କର୍ଣ୍ଣେଲ

**ମହେଶ ପ୍ରସାଦ ପୂଜାରୀ**

# ପୂଜାରୀ ପରିବାରର
# ଦୁଇଟି ଜ୍ୟୋତିଷ୍କ




ପରିବେଷକ

ଲେଫ୍ଟନେଣ୍ଟ କର୍ଣ୍ଣେଲ

**ମହେଶ ପ୍ରସାଦ ପୂଜାରୀ**

# PUJARI PARIBAR RA DUITI JYOTISKA

*Publisher:*
Lt.Col- Mahesh Prasad Pujari

*Printer:*
Agnishikha Press
Gaiety Road, Sambalpur

**Date:02/12/2007**

# ପୂଜାରୀ ପରିବାରର ଦୁଇଟି ଜ୍ୟୋତିଷ୍କ

**ପ୍ରକାଶକ:**
ଲେଫ୍ଟନେଣ୍ଟ କର୍ଣ୍ଣେଲ- ମହେଶ ପ୍ରସାଦ ପୂଜାରୀ

**ମୁଦ୍ରଣ:**
ଅଗ୍ନିଶିଖା ପ୍ରେସ, ଗେଟୀ ରୋଡ
ସମ୍ବଲପୁର

ତା:୦୨/୧୨/୨୦୦୭

# ପଦେଅଧେ



ସମ୍ବଲପୁରର ପୂଜାରୀ ବଂଶର ପ୍ରତିଷ୍ଠାତା ଶ୍ରୀ ବିଷ୍ଣୁ ପୂଜାରୀ ସମ୍ବଲପୁରର କୁଞ୍ଜେଲପଡ଼ା ଛକରେ ଅବସ୍ଥିତ ହୋତା ପଡ଼ା ଜଗନ୍ନାଥ ମନ୍ଦିରର ପ୍ରଥମ ପୂଜକ ଥିଲେ। ସେ କେଉଁଠୁ ଆସିଥିଲେ ବର୍ତ୍ତମାନ ସୁଦ୍ଧା ସଠିକ୍ ଭାବରେ ଜଣା ପଡ଼ିନାହିଁ। କେହି କହନ୍ତି ସେ ପୁରୀ ଅଞ୍ଚଳରୁ ଆସିଥିଲେ, ଆଉ କେହି କହନ୍ତି ସେ ଏଲାହାବାଦ କିମ୍ବା ବାରାଣାସୀ ଅଞ୍ଚଳରୁ ଆସିଥିଲେ। ସେ ଯାହା ହେଉ ନା କାହିଁକି ତାଙ୍କର ବଂଶଜ ମାନେ ସମୟାନୁକ୍ରମେ ପଶ୍ଚିମ ଓଡ଼ିଶାର ଇତିହାସ ସଙ୍ଗେ ଜଡ଼ିତ ଓ ଅନେକେ ସମ୍ବଲପୁରର ଇତିହାସ ସୃଷ୍ଟି କରି ଯାଇଛନ୍ତି। ସେମାନଙ୍କ ମଧରେ ଦୁଇଟି ମହାନ୍ ବ୍ୟକ୍ତିଙ୍କ ମଧରୁ ଜଣଙ୍କର ସ୍ମୃତି ସମ୍ବଲପୁର ତଥା ଓଡ଼ିଶାରୁ ବିଲୁପ୍ତ ହୋଇଗଲାଣି ଓ ଅନ୍ୟ ଜଣଙ୍କର ବିଲୁପ୍ତ ହେବାକୁ ଯାଉଛି।

ପ୍ରଥମ ଜଣଙ୍କ ହେଉଛନ୍ତି ସ୍ୱର୍ଗତ ବୈକୁଣ୍ଠନାଥ ପୂଜାରୀ। ସେ ମୋ ବାପାଙ୍କ ବାପାର ସବା ବଡ଼ଭାଇ। ତାଙ୍କ ଜୀବନ କାହାଣୀ ସମ୍ପର୍କରେ "କର୍ମବୀର ବୈକୁଣ୍ଠନାଥ ପୂଜାରୀ" ବହି ଲେଖିଛନ୍ତି ସ୍ୱର୍ଗତ ଶଙ୍କର ପ୍ରସାଦ ପାଢ଼ୀ। ଏହି ବହିର ଅବିକଳ ନକଲ ଉପସ୍ଥାପନ କରୁଛି। ଏହି ବହିର ଶେଷ ଆଡ଼କୁ ବଂଶାବଳୀ ଅଧାୟରେ ୧୯୭୧ ମସିହା ସୁଦ୍ଧା ପୂଜାରୀ ବଂଶର ବିଭିନ୍ନ ସଦସ୍ୟ ମାନଙ୍କର ସଂକ୍ଷିପ୍ତ ବିବରଣୀ ଦିଆଯାଇଛି। ସଦସ୍ୟମାନଙ୍କ ମଧରେ ଆପୋଷ ସମ୍ପର୍କ ଜାଣିବା ପାଇଁ ଶେଷ ପୃଷ୍ଠାରେ ବଂଶାବଳୀ ବୃତାନ୍ତ ଦିଆଯାଇଛି। ଏହା ପୂଜାରୀ ବଂଶର ଭବିଷ୍ୟତ ବଂଶଧର ପାଇଁ କିଛି କାମରେ ଆସିପାରେ। ପିଣ୍ଡ କର୍ମକର୍ମାଣୀ ବେଳେ ପୁରୋହିତ କର୍ତ୍ତାଙ୍କୁ ସପ୍ତ ପୂର୍ବଜଙ୍କ ନାମ ଉଚ୍ଚାରଣ କରିବାକୁ କହିଲେ ଅଧିକାଂଶ ପଣ୍ଡିତ ମୁହଁକୁ ବଲବଲ କରି ଚାହାନ୍ତି।

ଦ୍ୱିତୀୟ ବ୍ୟକ୍ତିତ୍ୱ ହେଉଛନ୍ତି ସ୍ୱର୍ଗତ ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀ। ଇଏ ମୋର ବାପାଙ୍କ ବାପାଙ୍କର ସାନ୍‌ଭାଇ। ସେ ତାଙ୍କ ଜୀବନ କାଳରେ ସମସ୍ତ ପଶ୍ଚିମ ଓଡ଼ିଶାରେ ଠାକୁରଙ୍କ ପରି ପୂଜା ପାଉଥିଲେ। ଆଜିକାଲି ଅନେକ ଘରେ ପୂଜା କୋଠରୀରେ ପ୍ରତିମା

ଆକାରରେ କିମ୍ୱା ବସାଉଠା କୋଠରୀରେ ଚିତ୍ର ରୂପେ ପୂଜା ପାଉଛନ୍ତି। ତାଙ୍କର ମହାନତା ପାଇଁ ଅନେକ ଲେଖକ ତାଙ୍କର ବ୍ୟକ୍ତିତ୍ୱକୁ ନେଇ ବହି ଲେଖିଛନ୍ତି ଓ ତାଙ୍କ ଲିଖିତ ସଂକଳନରେ ଉଚ୍ଚସ୍ଥାନ ଦେଇଛନ୍ତି। ଯେଉଁମାନେ ତାଙ୍କଠାରୁ କିଛି ଉପକାର ପାଇଛନ୍ତି, ସେମାନେ ତାଙ୍କ ନିଜ ପାଣ୍ଠିରୁ ହେଉ ବା ଚାନ୍ଦା ମାଗି ପଶ୍ଚିମ ଓଡ଼ିଶାର ବିଭିନ୍ନ ସ୍ଥାନରେ ତାଙ୍କ ସ୍ମୃତି ପାଇଁ ଅନେକ କାମ କରିଛନ୍ତି। ମୋର ସୌଭାଗ୍ୟକୁ ଏହି ଚଳନ୍ତ ଭଗବାନଙ୍କ ସଂସର୍ଗରେ ଶୈଶବାବସ୍ଥାରୁ ଆସିଥିଲି। ପିଲାଦିନରୁ ମୋର ଖାଇବାର ବହୁତ ଲାଳସା ଥିଲା। ଡ଼ାକ୍ତର ବାପା ବଡ଼ି ଭୋରରୁ ଉଠି ସବା ଉପର ମେଲା ଛାତରେ ବ୍ୟାୟାମ କରୁଥିଲେ। ତାପରେ ଗାଧୋଇ ପାଧୋଇ ନିରୋଳାରେ ସବା ଉପର ମହଲାରେ ଥିବା ପୂଜା କୋଠରୀରେ ପୂଜାର୍ଚ୍ଚନା ଓ ପ୍ରାଣାୟମ କରୁଥିଲେ। ମଝି ମହଲାରେ ଥିଲା ରନ୍ଧାଘର। ସେଇଠି ବସି ଡ଼ାକ୍ତର ମାଁ ନିଜେ ଜଳଖିଆ ପରଷି ଦେଉଥିଲେ। ଏଇ ସମୟକୁ ମୁଁ ଚାହିଁ ରହୁଥିଲି। ଚୁପ୍ କିନା ତାଙ୍କ ପାଖରେ ବସି ରହୁଥିଲି। ମୋତେ ଖୁଆଇବା ପରେ ହିଁ ସେ ଖାଉଥିଲେ। ଘରେ ପେଟେ ଜଳଖିଆ ଖାଇଲା ପରେ ମଧ୍ୟ ତାଙ୍କ ସାଙ୍ଗରେ ବସି ଖାଇବାକୁ ଭଲ ଲାଗୁଥିଲା। ଛୋଟ ପିଲା ମାନଙ୍କୁ ସେ ବହୁତ ସ୍ନେହ କରୁଥିଲେ। ଦିନେ ଘରେ ଜଳଖିଆ ନ ଖାଇ ତାଙ୍କ ପାଖକୁ ଖାଇବା ପାଇଁ ଚାଲିଆସିଲି। ଖାଉ ଖାଉ ସବୁ ଖାଇଗଲି। ବଡ଼ମାଁ ଉଭୟଙ୍କ ମୁହଁକୁ ଚାହିଁ ରହିଥାନ୍ତି। ବଡ଼ମାଁ ଡ଼ାକ୍ତର ବାପାଙ୍କୁ କହିଲେ, "ଆଉ ଦି'ଖଣ୍ଡ ପରଠା ଆଉ ଆମ୍ବ ଆଣୁଛି। ପେଟୁରାମ ତ ସବୁ ଖାଇଗଲା।" ଡ଼ାକ୍ତର ବାପା କହିଲେ, "ଯା ଖାଇବା ଦେଖି ମୋ ପେଟ ପୂରିଗଲା। ଆଉ ଦରକାର ନାହିଁ।" ତାପରେ ଦୁହେଁ ତଳ ମହଲାକୁ ଓହ୍ଲାଇ ଆସିଲୁ। ସେ ତଳ ମହଲାରେ ଥିବା ଚିକିତ୍ସା କୋଠରୀକୁ ଗଲେ। ମୋର ପେଟ ପୂରିଲା, ମୁଁ ଖେଳିବାକୁ ଚାଲିଗଲି।

କେବେ କେମିତି ମୁଁ ତାଙ୍କ ଚିକିତ୍ସାଳୟରେ ବସି ତାଙ୍କ ଚିକିତ୍ସା ପଦ୍ଧତି ଦେଖେ। ସେ ରୋଗୀର ଆର୍ଥିକ ପରିସ୍ଥିତି ଦେଖି ଚିକିତ୍ସା କରୁଥିଲେ । ଧନିକ ବ୍ୟକ୍ତିଙ୍କ ପାଇଁ ବିଦେଶରୁ ମଗା ହେଉଥିବା ଦାମୀ ଔଷଧ ଲେଖି ଦେଉଥିଲେ। ସେମାନଙ୍କର ଅଧିକ ରୋଜଗାର ପାଇଁ ଜଲ୍‌ଦି ରୋଗମୁକ୍ତ ହେବା ଦରକାର ପଡୁଥିଲା। ମଧ୍ୟବିତ୍ତ ମାନଙ୍କୁ ଦେଶୀ ଏଲୋପାଥି ଓ ଗରିବ ମାନଙ୍କୁ ଶସ୍ତା ଆୟୁର୍ବେଦିକ ବା ହୋମିଓପାଥି ଔଷଧ ଲେଖୁଥିଲେ। ଦିନକର କଥା - ଗୋଟିଏ ବୁଢ଼ୀ ଚିକିତ୍ସା ପାଇଁ ଆସିଥାଏ। ଅଣ୍ଟା ଲଇଁ ଯାଇଥାଏ। ଅଧିକ ବୟସ ପାଇଁ ଓ ଘରୁଆ ଅଶାନ୍ତି ପାଇଁ ସ୍ୱାସ୍ଥ୍ୟ ଭଲ ରହୁ ନଥାଏ। ସେଥିପାଇଁ କୌଣସି ଚିକିତ୍ସା ନାହିଁ। ତା ପାଖରେ ପଇସା ନଥାଏ। ତାକୁ ଦୁଇଟି ଔଷଧ

ପୁଡ଼ିଆ ଦେଲେ। ତା ଦେହ ଆଉଁସି ଦେଲେ। କହିଲେ ଘରେ ଉଚ୍ଚ ପ୍ରାଟିରେ କଥା କହିବାରୁ ତୋର ରକ୍ତଚାପ ବଢ଼ିଛି। ଏଇ ପୁଡ଼ିଆ ଖାଇ ଚାରିଦିନ ପରେ ଆସିବୁ। ବୁଢ଼ୀ ଚାରିଦିନ ପରେ ଆସିଲା । ଦୈବାତ୍ ମୁଁ ସେଦିନ ଭି ତାଙ୍କ ଚିକିତ୍ସାଳୟରେ ବସିଥାଏ। ତାର ରକ୍ତଚାପ ପରୀକ୍ଷା କଲେ। ସବୁ ଠିକ୍ ଥିଲା। ତାକୁ ଉପଦେଶ ଦେଲେ ଘର ଲୋକଙ୍କ ସଙ୍ଗେ କଳିଆ ନ କରିବା ପାଇଁ। ଏତେ ପ୍ରକାର ଚିକିତ୍ସା ପଦ୍ଧତି ଅବଲମ୍ବନ କରିବା ଆଉ କୌଣସି ଡ଼ାକ୍ତରଙ୍କ ପାଖରେ ମୋ ଜୀବନରେ ଦେଖିନାହିଁ।

ମୋର ପିଲାଦିନର ଏହି ଖାଇବାର ଲାଳସା ହିଁ ଅନେକ ସମୟରେ ତାଙ୍କ ପାଖକୁ ଟାଣିନିଏ। ସେ ସବୁଦିନ ଚିକିତ୍ସାଳୟକୁ ଆସିଥିବା ରୋଗୀ ଦେଖିଲା ପରେ ନଗର ପରିକ୍ରମାରେ ବାହାରୁଥିଲେ, ଯେମିତି ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ର ସମୟ ସମୟରେ ବାହାରୁଥିଲେ ପ୍ରଜାଙ୍କ ଭଲମନ୍ଦ ବୁଝିବା ପାଇଁ। ଏଇ ନଗର ପରିକ୍ରମା ଥିଲା, ତାଙ୍କ ଚିକିତ୍ସା ପଦ୍ଧତିର ଦ୍ୱିତୀୟ ଅଧ୍ୟାୟ। ଯେଉଁମାନେ ଜରାଗ୍ରସ୍ତ, ବିକଳାଙ୍ଗ ବା ସମ୍ପୂର୍ଣ୍ଣ ଶଯ୍ୟାଶାୟୀ ଓ ସେମାନେ ଚିକିତ୍ସାଳୟକୁ ଆସିବାକୁ ଅସମର୍ଥ, ସେମାନଙ୍କ ଚିକିତ୍ସା ପାଇଁ ଘର ଘର ବୁଲୁଥିଲେ। ଏଇଟା ଥିଲା ମୋର ଭଲ ଜିନିଷ ଖାଇବା ପାଇଁ ଆଉ ଏକ ସୁଯୋଗ। ସ୍କୁଲ ଛୁଟି ଦିନରେ ମୁଁ ଅନେକ ସମୟରେ ତାଙ୍କ ସଙ୍ଗେ ନଗର ପରିକ୍ରମା କରିବାକୁ ଯାଏ। ସେ ଛୋଟ ବାକ୍ସରେ ଡ଼ାକ୍ତରୀ ସରଞ୍ଜାମ ଓ ଔଷଧ ପତ୍ର ରଖି ନିଜ ଘରୁ ଯାଉଥିଲେ। ତାଙ୍କ ବୋଝ ହାଲୁକା କରିବା ପାଇଁ ଏହି ବାକ୍ସକୁ ନିଜେ ଧରେଁ ଓ ପଛେ ପଛେ ଯାଏଁ। ଖାସ୍ କରି ମାରୱାଡ଼ି ପଡ଼ାରେ ଭଲ ଖାଇବାକୁ ମିଳେ। ଫେରିଲା ବେଳକୁ ଦ୍ୱିପହର ହୋଇଯାଏ। ଯିବା ଆସିବା ବେଳକୁ ଅନେକ ଲୋକ ଭକ୍ତିରେ ତାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ। ସମ୍ବଲପୁର ଖରାଦିନେ ଦ୍ୱିପ୍ରହରେ ପିଚ୍ ରାସ୍ତା ଗରମ ହୋଇ ଗୋଡ଼ରେ ଫୋଟକା ବାହାରି ପଡ଼େ। ତାରି ଉପରେ ଲୋକଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରିବା ଦେଖି ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା। ସେ କେବେହେଲେ ହାତ ପତାଇ ତାଙ୍କ ପାରିଶ୍ରମିକ ମାଗିବାର ଦେଖିନାହିଁ କି କାହା ମୁହଁରୁ ଶୁଣିନାହିଁ। ଆଜିକାଲିର ଚିକିତ୍ସା ପଦ୍ଧତି ସମ୍ପୂର୍ଣ୍ଣ ଭିନ୍ନ। ଅଧିକାଂଶ ଚିକିତ୍ସକ ଗୋଟିଏ ଚେମ୍ବର ନିଜର ହେଉ ବା ଭଡ଼ାଘର ହେଉ ଖୋଲିଛନ୍ତି। ସାମ୍ନାରେ ଜଣେ ଜଣେ ଚିତ୍ରଗୁପ୍ତଙ୍କୁ ବସାଇଛନ୍ତି ପାଉଣା ସଂଗ୍ରହ କରିବା ପାଇଁ। ତାପରେ ନର୍ସିଂ ହୋମ୍। ତା ଆଗକୁ କଣ ହୁଏ ଆପଣମାନଙ୍କର ସମସ୍ତଙ୍କର କିଛି କିଛି ଅଭିଜ୍ଞତା ଥିବ। ତେଣୁ ନ ଲେଖିବା ଭଲ।

ଆମ ଡ଼ାକ୍ତର ବାପାଙ୍କର ସାହିତ୍ୟ ପ୍ରତି ବିଶେଷ ଆଗ୍ରହ ଥିଲା। ସେ ତାଙ୍କ ଯୌବନରେ 'ସୁନାବହୂ' ନାମକ ଏକ ଉପନ୍ୟାସ ଲେଖିଥିଲେ। ଏହି ବହିଟି କେଉଁ ମସିହାରେ ଲେଖିଥିଲେ ସଠିକ୍ ଜଣା ପଡ଼ିନାହିଁ। ୮ ଡ଼. ଶ୍ରଦ୍ଧାକର ସୂପକାର ଡ଼କ୍ଟର ଜନାର୍ଦ୍ଦନ ପୂଜାରୀଙ୍କ ଜୀବନ କାହାଣୀ 'ଆମର ଜୀବନ' ବହିରେ ଉଲ୍ଲେଖ କରିଛନ୍ତି। 'ସୁନାବହୂ' ୧୯୨୦ ମସିହା ପୂର୍ବରୁ ଲେଖାହୋଇଛି। 'ସୁନାବୋହୂ'ର ବିଭିନ୍ନ ଚରିତ୍ର ମୋ ମନକୁ ଆଉଟୁ ପାଉଟୁ କରିଦେଲା। ତୁଳନା କରି ଦେଖିଲି ମୋର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ଝିଅର ବର୍ତ୍ତମାନ ଜୀବନ କାହାଣୀ ସଙ୍ଗେ ଅନେକ ସାମଞ୍ଜସ୍ୟ ଅଛି। ତଫାତ୍ ଏତିକି ଯେ ଝିଅ ବରପକ୍ଷର ଅତ୍ୟାଚାର ସହି ନ ପାରି ବାପଘରକୁ ଫେରିଆସିଛି। ଭଗବାନ କରନ୍ତୁ ସେ ନିଜକୁ 'ସୁନାବହୂ' ରୂପେ ପରିଣତ କରି ଶ୍ୱଶୁର ଘର ଲୋକଙ୍କୁ ସଜାଡ଼ି ସୁନାବୋହୂ ପରି ସୁଖମୟ ଜୀବନଯାପନ କରୁ। ସମୟର ପରିବର୍ତ୍ତନ ହେଲେ ମଧ୍ୟ ଏହି ଦିଗରେ ବିଶେଷ କିଛି ସାମାଜିକ ପରିବର୍ତ୍ତନ ଆସିନାହିଁ।

ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ବିଷୟରେ ଲେଖା ହୋଇଥିବା ବହିଗୁଡ଼ିକ ସଂକଳନ କରି ଏହି ବହିରେ ଛାପିଲେ ବହିଟି ବହୁତ ବଡ଼ ହୋଇଯିବ। ଏକେତ ପୁରୁଣାକାଳିଆ ତାପରେ ନିଜ ବଂଶ ପାଇଁ ବା ଯେଉଁମାନେ ତାଙ୍କଠାରୁ ଉପକାର ପାଇଛନ୍ତି ସେମାନଙ୍କ ପାଇଁ ମହାନ ବ୍ୟକ୍ତି ହୋଇ ପାରନ୍ତି କିନ୍ତୁ ଆପଣଙ୍କ ପାଇଁ ହୋଇ ନ ପାରନ୍ତି। ତେଣୁକରି ସଂକଳନ ନ ଛାପି ତାଙ୍କ ଲିଖିତ ଏହି 'ସୁନାବହୂ' ର ଅବିକଳ ନକଲ ଦ୍ୱିତୀୟ ବହି ରୂପେ ଆପଣଙ୍କ ପାଇଁ ଉପସ୍ଥାପନ କରୁଛି।

ଉଭୟ ବହି ପୁରୁଣାକାଳିଆ ହୋଇଥିବାରୁ ଆପଣଙ୍କୁ ପଢ଼ିବାକୁ ଭଲ ଲାଗି ନପାରେ। ଯେମିତି ଆଜିକାଲିର ଟୋକା ଟୋକୀଙ୍କୁ ଚାଳିଶ ବର୍ଷ ତଳର ସିନେମା ଭଲ ଲାଗେ ନାହିଁ। ଯଦି ଏହି ବହିଟି ଆପଣଙ୍କର ହସ୍ତଗତ ହୁଏ ଓ ଆପଣ ଦୁଇଚାରି ପୃଷ୍ଠା ପଢ଼ିଲା ପରେ ଆପଣଙ୍କ ପଢ଼ିବାର ସ୍ପୃହା ନ ହୁଏ, ତାହେଲେ ଦୟାକରି 'ଏଡ଼ଭେର୍ଟାଇଜ୍‌ମେଣ୍ଟ ଲିଫ୍‌ଲେଟ୍' ଭଳିଆ ରାସ୍ତାକଡ଼ରେ କିମ୍ବା ଘରର ଅଳିଆଗଦାରେ ନ ଫୋପାଡ଼ି କୌଣସି ପୁସ୍ତକାଗାରକୁ ମୋ ତରଫରୁ ଦାନ କରିଦେବେ।

ଆପଣଙ୍କର ବିଶ୍ୱସ୍ତ

ସମ୍ବଲପୁର
୨୫.୧୧.୨୦୦୭

ମହେଶ ପ୍ରସାଦ ପୂଜାରୀ
ଜନ୍ମ : ୦୨/୧୧/୧୯୪୪

# ଅଭିମତ

ସମ୍ବଲପୁର, ପଶ୍ଚିମ ଓଡିଶାର ପ୍ରଧାନ ସହର । ବର୍ତ୍ତମାନର କଳାହାଣ୍ଡି, ନୂଆଁପଡା, ବଲାଙ୍ଗିର, ସୁବର୍ଣ୍ଣପୁର, ସମ୍ବଲପୁର, ବରଗଡ, ଦେବଗଡ, ଝାରସୁଗୁଡା, ସୁନ୍ଦରଗଡ ଓ ବୌଦ୍ଧ ଏହିପରି ୧୦ଟି ଜିଲ୍ଲା ଏବଂ ଅନୁଗୁଳ ଜିଲ୍ଲାର ଆଠମଲ୍ଲିକ ସବଡିଭିଜନର ସମାହାରରେ ଅବସ୍ଥିତ ବିରାଟ ଭୂଖଣ୍ଡକୁ ସାଧାରଣତଃ ପଶ୍ଚିମ ଓଡିଶା କୁହାଯାଉଛି । ପଶ୍ଚିମ ଓଡିଶାର ପ୍ରଧାନ ସହର, ସମ୍ବଲପୁର ହୋଇଥିବାରୁ ଏହି ବିରାଟ ଭୂଖଣ୍ଡର ଲୋକ, ଭାଷା, ସାହିତ୍ୟ, ସଂସ୍କୃତି, ଇତିହାସ ଇତ୍ୟାଦିକୁ ସମ୍ବଲପୁରିଆ, ସମ୍ବଲପୁରୀ ବୋଲି ଲୋକେ କହିଥାଆନ୍ତି । ଏହି ସାଢ଼େ ୧୦ଟି ଜିଲ୍ଲାକୁ ଘେନି ରହିଛି "ସମ୍ବଲପୁର ବିଶ୍ୱବିଦ୍ୟାଳୟ" ଏବଂ "ପଶ୍ଚିମ ଓଡିଶା ବିକାଶ ପରିଷଦ" ।

ତେବେ ପଶ୍ଚିମ ଓଡିଶାର ପ୍ରଧାନ ସହରର ପ୍ରଧାନ ଜନବସତି ହେଉଛି "ଝାଡୁଆପଡା" । ଏବେ ଟିକିଏ ଖାପଛଡା ଜଣାପଡୁଥିଲେ ମଧ୍ୟ ଏହି ନିକଟ ଅତୀତରେ "ଝାଡୁଆପଡା" କୁ ହିଁ ସମ୍ବଲପୁର ସହର ବୋଲି ବୁଝାଉଥିଲା । ଏହି ଝାଡୁଆପଡାର ବହୁ ମାନ୍ୟଗଣ୍ୟ, କୃତୀ, କୀର୍ତ୍ତିବାନ୍ ବ୍ୟକ୍ତି ସାରା ଓଡିଶାରେ ଏବଂ ସେମାନଙ୍କର ମଧ୍ୟରୁ କେତେଜଣ ଓଡିଶା ବାହାରେ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ଝାଡୁଆପଡା ନିବାସୀ ବିଭିନ୍ନ ପରିବାର ମଧ୍ୟରେ ପୂଜାରୀ ପରିବାର ସର୍ବଶ୍ରେଷ୍ଠ ପରିବାର । ଏହାର ପଛକୁ ପଣ୍ଡା, ବେହେରା, ମିଶ୍ର, ସୁପକାର, ପାଢ଼ୀ, ପୁରୋହିତ ଇତ୍ୟାଦି ପରିବାର ରହିଛନ୍ତି । ସମସ୍ତେ ଆରଣ୍ୟକ ବ୍ରାହ୍ମଣ ।

ସଂଗୃହୀତ ତଥ୍ୟ ଅନୁଯାୟୀ ୧୮ଶହ ମସିହାର ପାଖାପାଖି ସମୟରେ ବିଷ୍ଣୁ ପୂଜାରୀ ନାମଧେୟ ଜଣେ ଜଗନ୍ନାଥ ପୂଜକ ଏହି ଝାଡୁଆପଡାରେ ଥିଲେ । ପୂର୍ବ କାଳରେ ଜଣକର ପରିଚୟ ପାଇଁ କେବଳ 'ନାମ' ରହୁଥିଲା । ଲୋକସଂଖ୍ୟା ବଢ଼ିବାରୁ ଜଣକର କର୍ମ, ବୃତ୍ତି ଇତ୍ୟାଦିକୁ ନାମର ପଛରେ ଯୋଡି ଦିଆଗଲା । ତଦନୁସାରେ ବିଷ୍ଣୁ ପୂଜକ ଥିବାରୁ ତାଙ୍କର ସଞ୍ଜ୍ଞା ପୂଜାରୀ ନିଶ୍ଚୟ ହୋଇଛି । ବିଷ୍ଣୁ ପୂଜାରୀଙ୍କର ପଣନାତି ହେଉଛନ୍ତି ଦାଶରଥି । ଦାଶରଥି ପୂଜାରୀ ରେଢ଼ାଖୋଲ ରାଜ୍ୟର ଦେଓ୍ୱାନ ଥିଲେ । ତାଙ୍କର ଛଅପୁତ୍ର ଓ ତିନି କନ୍ୟା । ଛଅଜଣ ଯାକ ପୁତ୍ର ବେଶ୍ ଖ୍ୟାତି ସମ୍ପନ୍ନ ଥିଲେ । ପୁତ୍ର ବେଶ୍ ଖ୍ୟାତି ସମ୍ପନ୍ନ ଥିଲେ । ତେବେ ଜ୍ୟେଷ୍ଠ ପୁତ୍ର ବୈକୁଣ୍ଠନାଥଙ୍କର ଜୀବନୀକୁ ସମ୍ବଲପୁରର ଅନ୍ୟତମ ସ୍ମରଣୀୟ ପୁରୁଷ ଶଙ୍କର ପ୍ରସାଦ ପାଢ଼ୀ ଲେଖି ପୁସ୍ତିକା ଆକାରରେ

ପ୍ରକାଶ କରିଥିବା 'କର୍ମବୀର ବୈକୁଣ୍ଠ ନାଥ ପୂଜାରୀ' ନାମକ ପୁସ୍ତିକାକୁ ଏବଂ ଦାସରଥିଙ୍କର ଅଷ୍ଟମ ସନ୍ତାନ ଅର୍ଥାତ୍ ପଞ୍ଚମ ପୁତ୍ର ପ୍ରାତଃ ସ୍ମରଣୀୟ ଡା:ଜନାର୍ଦ୍ଦନ ପୂଜାରୀଙ୍କ ଦ୍ୱାରା ୧୯୧୩ ମସିହା ବେଳକୁ ଲିଖିତ ପାରିବାରିକ ଉପନ୍ୟାସ ପୁସ୍ତକ "ସୁନାବହୂ" କୁ ଏହି ପୁସ୍ତକରେ ତାଙ୍କର ଦାୟାଦ ଲେଫ୍ଟନେଣ୍ଟ କର୍ଣ୍ଣେଲ ମହେଶ ପୂଜାରୀ ପୁନର୍ବାର ପରିବେଷଣ କରିଛନ୍ତି । "କର୍ମବୀର ବୈକଣ୍ଠନାଥ ପୂଜାରୀ" ଓ "ସୁନାବହୂ" ପୁସ୍ତକ ଏପେ ଦୁଷ୍ପ୍ରାପ୍ୟ । ଏଥିଯୋଗୁଁ ଶ୍ରୀଯୁକ୍ତ ମହେଶ ପୂଜାରୀ ତାଙ୍କର ଦ୍ୱିତୀୟା କନ୍ୟା ଆୟୁଷ୍ମତୀ "ସୀମା"ଙ୍କର ବିବାହୋତ୍ସବ ଉପଲକ୍ଷେ ଏହି 'ପୂଜାରୀ ପରିବାରର ଦୁଇଟି ଜ୍ୟୋତିଷ୍କ' ପୁସ୍ତକ ପ୍ରକାଶ କରିଛନ୍ତି । ଶ୍ରୀ ମହେଶ ପୂଜାରୀ ଏହି ପୁସ୍ତକକୁ ପ୍ରକାଶ କରି ନିଜକୁ ପୂଜାରୀ ପରିବାରର ଉପଯୁକ୍ତ ଦାୟାଦ ରୂପେ ପରିଚୟ ଦେଇଛନ୍ତି । ଶ୍ରୀଯୁକ୍ତ ମହେଶ ପୂଜାରୀ ୰ ବୈକୁଣ୍ଠ ପୂଜାରୀ ଓ ୰ ଡ.ଜନାର୍ଦ୍ଦନ ପୂଜାରୀଙ୍କର କୀର୍ତ୍ତିଗାନ କରି ଆମ୍ଭମାନଙ୍କର ଧନ୍ୟବାଦାର୍ହ ।

ଅର୍ଜୁନ ରଞ୍ଜନ ପଣ୍ଡା
ସମ୍ପାଦକ: 'ଦୈନିକ ଅଗ୍ନିଶିଖା'
ସମ୍ବଲପୁର

# କର୍ମବୀର ବୈକୁଣ୍ଠନାଥ ପୂଜାରୀ



ପ୍ରକାଶକ: **ଶଙ୍କର ପ୍ରସାଦ ପାଢ଼ୀ** (ସର୍ବସତ୍ୱ ସଂରକ୍ଷିତ)

ପ୍ରଥମ ମୁଦ୍ରଣ - ଜୁଲାଇ ୧୯୭୪

ମୁଦ୍ରାକର

**ପଣ୍ଡା ପ୍ରକାଶନୀ**

ଧର୍ମଶାଳା ଗଳି

ସମ୍ବଲପୁର

# ମୁଖବନ୍ଧ

ବହୁ ବର୍ଷ ପୂର୍ବେ ପୂଜ୍ୟପାଦ ଶ୍ରୀ ପ୍ରସନ୍ନ କୁମାର ପୂଜାରୀ ୰ କର୍ମବୀର ବୈକୁଣ୍ଠନାଥ ପୂଜାରୀଙ୍କ ଜୀବନ ଚରିତ ତାଙ୍କର ଇଂରାଜୀ ପୁସ୍ତକ "Baikunth and his Letters" ରେ ପ୍ରକାଶ କରିଥିଲେ। କିନ୍ତୁ ଜୀବନୀଟି ଇଂରାଜୀ ଭାଷାରେ ଲିଖିତ ହୋଇଥିବାରୁ ତାହା ଇଂରାଜୀ ଅନଭିଜ୍ଞ ପାଠକ ପାଠିକାଙ୍କର ବୋଧଗମ୍ୟ ହେଉ ନ ଥିଲା। ଇଂରାଜୀ ପୁସ୍ତକଟି ମଧ୍ୟ ବର୍ତ୍ତମାନ ଦୁର୍ଲଭ।

ପୂଜନୀୟ ଶ୍ରୀଯୁକ୍ତ ଶଙ୍କର ପ୍ରସାଦ ପାଢ଼ୀ ୰ କର୍ମବୀର ବୈକୁଣ୍ଠନାଥଙ୍କ ଆଉ ଏକ ଜୀବନୀ ଲେଖିଥିବାରୁ ସମସ୍ତଙ୍କର ଧନ୍ୟବାଦର ପାତ୍ର ହୋଇଛନ୍ତି। ଶ୍ରୀଯୁକ୍ତ ପୂଜାରୀଙ୍କ ଲିଖିତ ଇଂରାଜୀ ପୁସ୍ତକଠାରୁ ଏହା ଭିନ୍ନ ଓ ଏଥିରେ ବୈକୁଣ୍ଠନାଥଙ୍କ ଜୀବନୀର ଅନେକ ନୂଆ ତଥ୍ୟ ସନ୍ନିବିଷ୍ଟ ହୋଇଛି।

ଏ ଜୀବନୀରେ ସମ୍ବଲପୁର ସହର ତଥା ଜିଲ୍ଲାରେ ଉନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ କେତେକ ବର୍ଷର ସାମାଜିକ ଅବସ୍ଥାର ଏକ ସ୍ପଷ୍ଟ ଚିତ୍ର ଦେଖାଯାଏ। ବୈକୁଣ୍ଠନାଥ ଥିଲେ ଆଦର୍ଶବାଦୀ ଯୁବକ। ତାଙ୍କର ପିତୃମାତୃ ଭକ୍ତି, ସ୍ୱଦେଶ ଓ ଭାଷା ପ୍ରତି ମମତା, ସାମାଜିକ ସଙ୍ଗଠନ – ପରାୟଣତା ଆଦି ଯେଉଁ କେତୋଟି ମହତ୍ ଗୁଣର ଚିତ୍ର ଏ ଜୀବନୀରେ ଦିଆଯାଇଛି, ତାହା ତାଙ୍କର ଅସାଧାରଣତାର ପରିଚୟ ଦିଏ। ବୈକୁଣ୍ଠନାଥ ଅତି ଅଳ୍ପ ବୟସରେ ଦେହତ୍ୟାଗ କଲେ। ତାଙ୍କର କନିଷ୍ଠ ସହୋଦର ନୀଳକଣ୍ଠ ମଧ୍ୟ ପ୍ରଥମ ଯୌବନରେ ଜୀବନ ହରାଇଥିଲେ। ଚନ୍ଦ୍ରଶେଖର ବେହେରା ଥିଲେ ବୈକୁଣ୍ଠନାଥଙ୍କର ଆତ୍ମୀୟ। ଯଦି ବୈକୁଣ୍ଠ ଓ ନୀଳକଣ୍ଠ ଚନ୍ଦ୍ରଶେଖରଙ୍କ ପରି ଦୀର୍ଘଜୀବୀ ହୋଇଥାନ୍ତେ, ତାହେଲେ ସେମାନେ ମଧ୍ୟ ଚନ୍ଦ୍ରଶେଖରଙ୍କ ପରି ସମାଜର ଓ ଦେଶର ସେବାରେ ଜନସାଧାରଣଙ୍କ ପ୍ରଭୂତ ଉନ୍ନତି ସାଧନ କରିଥାନ୍ତେ, ଏଥିରେ ସନ୍ଦେହ ନାହିଁ।

ଶ୍ରୀଯୁକ୍ତ ଶଙ୍କର ପ୍ରସାଦ ପାଢ଼ୀ ୰ ଚନ୍ଦ୍ରଶେଖର ବେହେରାଙ୍କର ଜୀବନୀ ଲେଖି ସମ୍ବଲପୁରର ଆଧୁନିକ ଇତିହାସର ଏକ ଅଭାବ ପୂରଣ କରିଛନ୍ତି। ତହିଁ ସାଙ୍ଗକୁ କର୍ମବୀର ବୈକୁଣ୍ଠନାଥଙ୍କ ଜୀବନୀ ମଧ୍ୟ ଆମର ଇତିହାସର ଅଙ୍ଗ। କେବଳ ସେତିକି ନୁହେଁ,

ପ୍ରତିଭା ପୂଜା ପରାଙ୍‌ମୁଖ ଆମ୍ଭମାନଙ୍କ ମନରେ ଏହା ଆମର ଆଦର୍ଶ ପୂର୍ବଜ ମାନଙ୍କ ପ୍ରତି ଏକ ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ରୂପେ ପରିଗଣିତ ହେବ। ଆଜିକାଲିର ଲକ୍ଷ୍ୟହୀନ, ପଥଭ୍ରଷ୍ଟ ଅଗଣିତ ଯୁବକ ଯୁବତୀ ମାନଙ୍କ ମନରେ ଏହା ଏକ ଆଲୋକ ବର୍ତ୍ତିକା ରୂପେ ଦିଗ୍ ଦର୍ଶନ କରାଇବ ବୋଲି ମୋର ବିଶ୍ୱାସ। ଆଶା କରେଁ ଏ ଜୀବନୀ ପୁସ୍ତିକାଟି ସୁଧୀ ସମାଜରେ ଆଦୃତ ହେବ।

ଶ୍ରଦ୍ଧାକର ସୂପକାର

୨୭/୧୦/୧୯୭୧

# ପଦେଅଧେ

ସମ୍ବଲପୁର ଅଞ୍ଚଳର କୃତୀ ସନ୍ତାନଗଣଙ୍କ ଜୀବନୀ ସଂକଳନ ନିମିତ୍ତ ଉତ୍ସାହଦାତାଙ୍କ ମଧ୍ୟରେ ଓଡ଼ିଶା ସରକାରଙ୍କ ପୂର୍ବତନ ଆଇନ ଓ ସ୍ୱାୟତ୍ତ ଶାସନ ମନ୍ତ୍ରୀ ଓ ବର୍ତ୍ତମାନର ପାର୍ଲିଆମେଣ୍ଟ ସଦସ୍ୟ ଶ୍ରୀଯୁକ୍ତ ବନମାଳୀ ବାବୁ ଅନ୍ୟତମ। ତାଙ୍କ ପିତୃବ୍ୟ ଶ୍ରୀ ଶ୍ୟାମ ସୁନ୍ଦର ବାବୁ ବୈକୁଣ୍ଠନାଥଙ୍କ ତିନୋଟି ଘରୋଇ ପତ୍ରର ଛିନ୍ନାଂଶ ଯୋଗାଇଛନ୍ତି; ପଣ୍ଡିତ ପ୍ରସନ୍ନ କୁମାର ପୂଜାରୀଙ୍କ ପ୍ରଣୀତ "Baikunth and his Letters" ପୁସ୍ତକଟିରୁ ବହୁ ଉପାଦାନ ସଂଗୃହୀତ ହୋଇଛି। ଏତଦ୍‌ବ୍ୟତୀତ, ସମ୍ବଲପୁର ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ତାଙ୍କ ମାସିକ ପତ୍ରିକା 'ସପ୍ତର୍ଷି'ରେ ବୈକୁଣ୍ଠନାଥଙ୍କ ଜୀବନୀ ପ୍ରକାଶ କରାଇଥିବାରୁ ଏ ସମସ୍ତେ ମୋର ଧନ୍ୟବାଦର ପାତ୍ର।

ବୈକୁଣ୍ଠନାଥଙ୍କ ଜୀବନୀଟି ପୁସ୍ତକାକାରରେ ପ୍ରକାଶ ସଂକ୍ରାନ୍ତରେ ବୈକୁଣ୍ଠନାଥଙ୍କ ଜ୍ୟେଷ୍ଠା ଭଗ୍ନୀ ରୁକ୍ମିଣୀଙ୍କ ଦୌହିତ୍ର ଓ ମୋର ଭାତୃଷ୍ପୁତ୍ର ବିଶିଷ୍ଟ ଖଣି ମାଲିକ ଶ୍ରୀମାନ ସୁରେଶ ଚନ୍ଦ୍ର ପାଢ଼ୀ, ବୈକୁଣ୍ଠନାଥଙ୍କ ପତ୍ନୀଙ୍କ ରକ୍ତ ସମ୍ପର୍କୀୟ ଶ୍ରୀ ବନମାଳୀ ବାବୁ, ଏମ୍.ପି., ସ୍ଥାନୀୟ ବିଦ୍ୟୁତ ବିଭାଗର ଏସ୍.ଡ଼ି.ଓ. (୰ ଜନାର୍ଦ୍ଦନ ସୂପକାରଙ୍କ ପୁତ୍ର) ମୋର ପୌତ୍ର ଶ୍ରୀମାନ କରୁଣାକର ସୂପକାର, ବୈକୁଣ୍ଠନାଥଙ୍କ ଭ୍ରାତା ଶ୍ରୀଯୁକ୍ତ ବନମାଳୀ ପୂଜାରୀ ଓ ବିଶିଷ୍ଟ ଶିଳ୍ପପତି ଶ୍ରୀ ରାମକୁମାର ଅଗ୍ରବାଲା ଅକୁଣ୍ଠ ଚିତ୍ତରେ ଆର୍ଥିକ ସାହାଯ୍ୟ କରିଥିବାରୁ ସେମାନେ ମୋର ପ୍ରଶଂସା ଭାଜନ।

"ଅକ୍ଷୟ ତାରକା ଚନ୍ଦ୍ରଶେଖର" ପୁସ୍ତକର ପ୍ରକାଶିକା ଶ୍ରୀମତୀ ସରୋଜିନୀ ପାଢ଼ୀ ଓ ଶ୍ରୀ ଚତୁର୍ଭୁଜ ସାହୁ ବ୍ଲକ ଯୋଗାଇଥିବାରୁ ତାଙ୍କୁ ଲେଖକ ସାଧୁବାଦ ଜଣାଉଛି।

ବିଷ୍ଣୁ ପୂଜାରୀଙ୍କ ଠାରୁ ତାଙ୍କ ଅଧସ୍ତନ ଛଅ ପୁରୁଷ ପର୍ଯ୍ୟନ୍ତ ସାଧ୍ୟାନୁଯାୟୀ ପରିଚୟ ଦେବା ଯତ୍ନ କରାଯାଇଛି।

# ଭୂମିକା

ଆଜ ସାଧୁତା ସ୍ଥଳରେ ଶଠତା, କର୍ମନିଷ୍ଠା ସ୍ଥଳରେ ଆଳସ୍ୟ, ଗୁଣଗ୍ରାହୀତା ବଦଳରେ ପରଶ୍ରୀକାତରତା ସମାଜର ପ୍ରତି ସ୍ତରରେ ମାଡ଼ି ଯାଇଥିବାରୁ ବିକୃତ ରୁଚି ଓ ଦୃଷ୍ଟିଭଙ୍ଗୀ ତାର ପ୍ରତ୍ୟେକ କ୍ଷେତ୍ରରେ ଦେଖା ଦେଉଛି। ଏ ଅବସ୍ଥାରେ ସମାଜର ଅଗ୍ରଗତି ଅସମ୍ଭବ।

"ବିଦ୍ୱାଂସଃ ଶତଶଃ ସ୍ଫୁରନ୍ତି ଭୁବନେ ସନ୍ତ୍ୟେବ ଭୂମୀଭୃତୋ
ବୃତ୍ତିଂ ବୈନୟିକାଂ ଚ ବିଭ୍ରତି କତି ପ୍ରାଣନ୍ତି ବାଗ୍‌ଭିଃ ପରେ।
ଦୃଶ୍ୟନ୍ତେ ସୁକୃତ କ୍ରିୟାସୁ କୁଶଳାଦାତାପି କୋଽପି କ୍ୱଚିତ୍
କଲ୍ପୋର୍ବୀରୁହ ବଦ୍‌ଦନେ ସୁଲଭଃ ପ୍ରାୟଃ କୃତଜ୍ଞୋ ଜନଃ ।।"

ଶ୍ଳୋକାର୍ଥ :- ଜଗତରେ ଶତ ଶତ ବିଦ୍ୱାନ ଦେଖାଯାଆନ୍ତି, ରାଜାଗଣ ବି ଉଣା ନାହାନ୍ତି, କେତେକ ବିନୟୀ ଲୋକ ଅଛନ୍ତି, ନିଜ ବଚନରେ ସଭିଙ୍କୁ ପ୍ରସନ୍ନ କରିବା କେତେକ ସଜ୍ଜନ ବି ଅଛନ୍ତି; ପୁଣ୍ୟ କର୍ମକୁଶଳୀ ବ୍ୟକ୍ତି ଅଛନ୍ତି କେତେକ ଦାତା ବି ଅଛନ୍ତି; ଏ ସବୁ ରହିଛି ସତ, କିନ୍ତୁ ବନରେ କଳ୍ପ ବୃକ୍ଷ ସୁଲଭ ନଥିବା ପରି କୃତଜ୍ଞ ଲୋକ ଏବେ ଦୁର୍ଲଭ।

ଆଗେ ପାଠ୍ୟ କ୍ରମରେ ନୀତି ଶିକ୍ଷା ଥିବାରୁ ଛାତ୍ରଗଣ ଶାସ୍ତ୍ର, ପୁରାଣ ଓ ଜୀବନୀର ଆଦର୍ଶ ତଥ୍ୟ ଶ୍ରବଣ ଓ ମନନ ଦ୍ୱାରା ଉପକୃତ ହେଉଥିଲେ। ଏବେ ଧର୍ମ ନିରପେକ୍ଷ ରାଷ୍ଟ୍ରରେ ସେ ସୁବିଧା ଅଭାବରୁ ଉଶୃଙ୍ଖଳତା ବୃଦ୍ଧି ପାଉଛି। ପଥଭ୍ରଷ୍ଟଙ୍କୁ ଆଲୋକବର୍ତ୍ତିକା ପରି ଦିଗ୍‌ଦର୍ଶନ କରାଇବା ଆଶାରେ ଏ ଆଦର୍ଶ ଜୀବନୀ ପ୍ରକାଶର ଉଦ୍ୟମ କଲି।

**ଲେଖକ**

# କର୍ମବୀର ବୈକୁଣ୍ଠନାଥ ପୂଜାରୀ

ପାଟଣାର ଚୌହାଣ ବଂଶୀୟ ରାଜା ନରସିଂହ ଦେବ ନିଜ ରାଜ୍ୟାନ୍ତର୍ଗତ ହୁମା ପ୍ରଦେଶ ଆପଣାର ଅନୁଜ ବଳରାମ ଦେବଙ୍କୁ ସମର୍ପଣ କରିଥିଲେ । ଏ ଅଞ୍ଚଳର କେନ୍ଦ୍ରସ୍ଥଳ ଥିଲା ଜୀରା ଉପନଦୀ କର୍ତ୍ତୃକ ଧୌତ ବରଗଡ଼ । ବରଗଡ଼ର ଅଧୀଶ୍ୱର ବର୍ଣ୍ଣ ଓ ଉଜିୟାର ନାମଧେୟ ଅଦମ୍ୟ ପରାକ୍ରମୀ ଆଦିବାସୀ ସହୋଦର ଭାତୃଦ୍ୱୟଙ୍କର ପ୍ରତିପତ୍ତି ସେ ଚୂର୍ଣ୍ଣ ବିଚୂର୍ଣ୍ଣ କରି ସେଠାରେ ରାଜଧାନୀ ସ୍ଥାପନ କଲେ । ରାଜଧାନୀର ବହୁ ନିଦର୍ଶନ ଏ ପର୍ଯ୍ୟନ୍ତ ରହିଛି । କିଛି କାଳ ପରେ ସମ୍ବଲପୁରକୁ ରାଜଧାନୀ ଉଠାଇ ଅଣାଗଲା । ଇଂରେଜମାନେ ୧୮୫୦ ଜାନୁଆରୀ ପହେଲାରେ ସ୍ୱତ୍ୱନୀତି ବଳରେ ସମ୍ବଲପୁର ଅଧିକାର କରି ବରଗଡ଼କୁ ଏକ ସବ୍-ଡ଼ିଭିଜନ କଲେ । ଏଠାର ଅଦାଲତରେ ଦାଶରଥୀ ପୂଜାରୀ ଅଳ୍ପ ବେତନଭୋଗୀ କିରାଣୀ ଥିଲେ । ତାଙ୍କର ଔରସରୁ ଓ ଦେବକୀ ଦେବୀଙ୍କ ଦ୍ୱିତୀୟ ଗର୍ଭରୁ ୧୮୭୭ ଖ୍ରୀ:ଅ: ଜାନୁଆରୀ ୪ ତାରିଖରେ ବୈକୁଣ୍ଠନାଥ ଜନ୍ମ ଗ୍ରହଣ କରିଥିଲେ ।

ଦାଶରଥୀ ପୂଜାରୀ ନିରବଧି ନିରତିଶୟ ନିଷ୍ଠାପର ଭାବେ କାର୍ଯ୍ୟ ସମ୍ପାଦନ କରୁଥିଲେ । ତାଙ୍କ ସାଧୁତା ଓ କର୍ତ୍ତବ୍ୟପରାୟଣତାର ପୁରସ୍କାର ସ୍ୱରୂପ ସେ ତହସିଲଦାର ପଦକୁ ଉନ୍ନତି ଲାଭ କରିଥିଲେ । ଅବଶେଷରେ ରେଢ଼ାଖୋଲ ରାଜ୍ୟର ଦେୱାନ କାର୍ଯ୍ୟରେ ନିଯୁକ୍ତ ହୋଇ ରାଜ୍ୟର ଉନ୍ନତି ବିଧାନ କରିଥିବାରୁ ଅବସର ନେବା ପୂର୍ବରୁ ସରକାରଙ୍କ ପାଖରୁ ରାୟସାହେବ ଉପାଧି ଲାଭ କରିଥିଲେ । ତାଙ୍କ ସହଧର୍ମିଣୀ ୰ ଦେବକୀ ଦେବୀ ଜଣେ ପତିପରାୟଣା ଧର୍ମନିଷ୍ଠା ଓ ଆଦର୍ଶ ମହିଳା ଥିଲେ । ତାଙ୍କ ତୁଲ୍ୟା ପ୍ରବୀଣା ଗୃହିଣୀ ଓ ସହନଶୀଳା ଜନନୀ ସହଜରେ ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ଯାଙ୍କ ପ୍ରଥମ ଗର୍ଭଜାତ ତନୟା ୰ ରୁକ୍ମିଣୀ ଦେବୀ ସମ୍ବଲପୁରର ଅବିସମ୍ବାଦୀ ଜନନାୟକ ୰ ଚନ୍ଦ୍ରଶେଖର ବେହେରାଙ୍କ ପାଣି ଗ୍ରହଣ କରିଥିଲେ । ପ୍ରଥମ ପୁତ୍ର ପ୍ରାପ୍ତି ପରେ ଦାଶରଥୀ ପୂଜାରୀଙ୍କ ପ୍ରାଣରେ ପରିକଳ୍ପନା ହୋଇ ନଥିବ ଯେ ତାଙ୍କର ନବଜାତ ପୁତ୍ରଟି ଇତିହାସ ପୃଷ୍ଠାରେ ଅଲିଭା ଛାପ ଛାଡ଼ିଯିବ ।

ଜଣେ ସାମାନ୍ୟ ବେତନ ଭୋଗୀ କିରାଣୀ ବିଶେଷତଃ ଶିକ୍ଷାର ସେପରି ପ୍ରସାର ଜିଲ୍ଲାରେ ହୋଇ ନଥିବା ସମୟରେ ପୁତ୍ରକୁ ଉଚ୍ଚ ଶିକ୍ଷା ପ୍ରଦାନ କରିବା ଅତି ଦୁରୂହ ବ୍ୟାପାର। ଭଗବାନଙ୍କ ପରମ ଭକ୍ତ ଦାଶରଥୀ ଏକମାତ୍ର ଭଗବାନଙ୍କ କୃପା ଉପରେ ନିର୍ଭର କରିଥିଲେ ଓ ତାହା ହିଁ ତାଙ୍କ ମନୋରଥ ପୂର୍ଣ୍ଣ କରିବାରେ ସହାୟତା କରିଥିଲା।

ବୈକୁଣ୍ଠନାଥଙ୍କ ଜନନୀ ଦେବକୀ ଦେବୀ ଗୃହ କର୍ମ ସମ୍ପାଦନ ପାଇଁ ପୁତ୍ରର ଶୟନ ବ୍ୟବସ୍ଥା ନିମନ୍ତେ କେବେହେଲେ 'ବୁଢ଼ୀ ରାକ୍ଷସୀ' ବା 'କୋକବାୟା' ପରି ଗଳ୍ପ ଶୁଣାଇ ପୁତ୍ରକୁ ଭୟ ବିହ୍ୱଳ କରୁ ନଥିଲେ। ବୈକୁଣ୍ଠଙ୍କ ପ୍ରବୃତ୍ତି ଶୁଦ୍ଧ ହେବ, ସେ ସ୍ୱଦେଶାନୁରାଗୀ ହେବେ, ନୈତିକ ସାହସ ସଞ୍ଚୟ କରିବେ ଏହି ଲକ୍ଷ୍ୟରେ ପୁରାଣରୁ ବହୁ ଉପାଖ୍ୟାନ ଶୁଣାଇ ପୁତ୍ରକୁ ଶୁଆଉଥିଲେ। ପିତାମହ ଭୀଷ୍ମ ଦେବ କିପରି ପିତୃ ସନ୍ତୋଷ ବିଧାନ ନିମନ୍ତେ ଆଜୀବନ ବ୍ରହ୍ମଚର୍ଯ୍ୟ ପାଳନ କରିଥିଲେ, ଦୁରାତ୍ମା ଦୁଃଶାସନ ଦୁର୍ଯ୍ୟୋଧନଙ୍କ ନିର୍ଦ୍ଦେଶରେ ଦ୍ରୌପଦୀଙ୍କୁ ବିବସନା କରିବା ଉଦ୍ୟମ ସମୟରେ ସମୟରେ ନିଜ ଅଙ୍ଗାଭରଣକୁ ଭିଡ଼ି ଦେହାବୃତ କରିବା ନିମନ୍ତେ ଚେଷ୍ଟା ନ କରି ଭଗବାନଙ୍କଠାରେ ଆତ୍ମ ସମର୍ପଣ କରିବାରୁ ଦ୍ରୌପଦୀଙ୍କୁ ବିବସ୍ତ୍ର କରିବାକୁ ଦୁଃଶାସନ କିପରି ବିଫଳ ହୋଇଥିଲା, ଲକ୍ଷ୍ମଣ କିପରି ଭ୍ରାତୃବତ୍ସଳ ଥିଲେ। ସୁଖଦୁଃଖ ତଥା ବଣ ଗମନ କାଳରେ କିପରି ସେ ଛାୟା ପରି ରାମଙ୍କ ଅନୁଗାମୀ ହେଉଥିଲେ, ଏ ସମସ୍ତ ସେ ଗଳ୍ପାକାରରେ ପୁତ୍ରକୁ ଶୁଣାଉଥିଲେ। ବିଦ୍ୟାଳୟରେ ବିଦ୍ୟାର୍ଜନ ହୁଏ କିନ୍ତୁ ସଦ୍‌ଗୁଣାବଳୀ ଅର୍ଜନ ହୁଏ ପିତାମାତାଙ୍କ ଆଦର୍ଶ ଚରିତ୍ର ଓ ସତ୍ ଉପଦେଶ ମାନଙ୍କରୁ।

କବି ମିଲ୍‌ଟନ କହିଛନ୍ତି, "The childhood shows the man as morning shows the day."। ପ୍ରାତଃକାଳ ଯେପରି ଦିବସର ସୂଚନା ଦେଇଥାଏ ସେହିଭଳି ମାନବର ବାଲ୍ୟକାଳ ତାହାର ଜୀବନର ସୂଚନା କରାଇଥାଏ। ବୈକୁଣ୍ଠନାଥ ଶୈଶବାବସ୍ଥାରୁ ଶାନ୍ତଶିଷ୍ଟ ଥିଲେ। ସେ ଅନିସନ୍ଧିତ୍ସୁ ଥିଲେ। ବାଳକ ମାନଙ୍କ ସହିତ ଶୃଙ୍ଖଳ ଭାବରେ କ୍ରୀଡ଼ାରେ ବ୍ୟସ୍ତ ରହୁଥିଲେ। ପରସ୍ପର ମଧ୍ୟରେ ବିବାଦ ପ୍ରାୟ ହେଉ ନଥିଲା। ଦୈବାତ୍ କୌଣସି ଦିନ ଯଦି ସେପରି ଘଟୁଥିଲା ସେ ସଙ୍ଗେ ସଙ୍ଗେ ତାହା ସମାଧାନ କରୁଥିଲେ ନିଜ ଜନନୀଙ୍କ ମୁଖରୁ ଶୁଣିଥିବା କେତେ ଉପାଖ୍ୟାନର ଉଦାହରଣ ଦେଇ। ପବିତ୍ର ଓ ସ୍ନିଗ୍‌ଧ ଶୈଶବାବସ୍ଥାର ସଦୁପଯୋଗ କରିବାରେ ସେ ତତ୍ପର ଥିଲେ। ସେ ଆତ୍ମ ବିଶ୍ୱାସୀ ଥିଲେ।

ସମ୍ପ୍ରତି ସମ୍ବଲପୁର ଜିଲ୍ଲା ଶିକ୍ଷା କ୍ଷେତ୍ରରେ ବହୁଦୂର ଅଗ୍ରସର ହୋଇଅଛି। କିନ୍ତୁ ଆଜକୁ ପ୍ରାୟ ଶତେକ ବର୍ଷ ପୂର୍ବେ ଏ ଜିଲ୍ଲା ଶିକ୍ଷା କ୍ଷେତ୍ରରେ ଅନଗ୍ରସର ଥିବା ସମ୍ପର୍କରେ କଟକରୁ ପ୍ରକାଶିତ 'ସେବକ' ପତ୍ରିକାରେ ସନ ୧୮୮୪ ଜାନୁଆରୀ ୫ ତାରିଖରେ ଏକ ଲେଖା ପ୍ରକାଶ କରାଯାଇଥିଲା ଯେ "ଶିକ୍ଷା ଅନଗ୍ରସର ହେବାର ଏକ କାରଣ ବିଦ୍ୟାଳୟ ମାନଙ୍କରେ ଅଣଓଡ଼ିଆ ଶିକ୍ଷକଗଣଙ୍କ ନିଯୁକ୍ତି ଏବଂ ସେମାନଙ୍କ ଏହି ଜି... ଏହାର ଜଳବାୟୁ ପ୍ରତି ଘୃଣା ଭାବ ପ୍ରକାଶ। ସେମାନେ ସଦାବେଳେଏହି ଜିଲ୍ଲାରୁ ଅ...ତ୍ର ପରିବର୍ତ୍ତନ ହେବା ସୁଯୋଗର ଅପେକ୍ଷାରେ ରହୁଥିଲେ ବୋଲି ବିଦ୍ୟାଳୟ ... ତଦାନୀନ୍ତନ ପରିଦର୍ଶକ ମନ୍ତବ୍ୟ ପ୍ରକାଶ କରିଥିଲେ।"

ସେତେବେଳେ ଲୋକମାନେ ଶିକ୍ଷା ପ୍ରତି ବୀତସ୍ପୃହ ହେବା ସମ୍ପର୍କରେ ୰ କବି ଗଙ୍ଗାଧର ନିଜ ଆତ୍ମଜୀବନୀରେ ଲେଖିଛନ୍ତି, "ସେତେବେଳେ ସ୍କୁଲରେ ଅନୁପସ୍ଥିତ ବାଳକ ମାନଙ୍କର ପିତାମାନେ ବରଗଡ଼କୁ ଧରା ଯାଇ କଠିଣ ପରିଶ୍ରମ ଦଣ୍ଡ ପାଉଥିଲେ। ସ୍କୁଲରେ ଯାହାର ନାମ ଲେଖା ଯାଉଥାଏ, ତାର ଘରେ କାନ୍ଦ ବୋବାଳି ପଡୁଥିଲା।"

ଉପର୍ଯ୍ୟୁକ୍ତ, ଅସଙ୍ଗତ ଓ ଅବାଞ୍ଛିତ ବାତାବରଣ ମଧ୍ୟରେ ବି ବ୍ରାହ୍ମଣ ପରିବାର ଶିକ୍ଷା ପ୍ରତି ଆଗ୍ରହୀ ଥିବା ବିଷୟ ମେଦିନୀପୁର ଶିକ୍ଷା ବିଭାଗର ଇନ୍ସ... ୧୮୫୮-୫୯ ସାଲର ବିବରଣୀରେ ...ର୍ଣ୍ଣ-ଲିଖିତ ମତେ ଉଲ୍ଲେଖ କରିଅଛନ୍ତି ...ମ୍ବଲପୁରରେ ବ୍ରାହ୍ମଣଗଣ ସ୍କୁଲ ଶିକ୍ଷା ପ୍ରତି ବିଶେଷ ଆଗ୍ରହାନ୍ୱିତ। ଏହା ସ୍ୱାଭାବିକ ଯେ ... ପ୍ରସାରର ଅଗ୍ରଗତି ସଙ୍ଗେ ମଫସଲ ଅପେକ୍ଷା ସହରର ଅଧିବାସୀ ଗଣ ପ୍ରଥମେ ଆକୃଷ୍ଟ ହୋଇଥିଲେ କାରଣ ସହରରେ କର୍ମସଂସ୍ଥାନ ନିମନ୍ତେ ଶିକ୍ଷା ପ୍ରତି ଆଶୁ ଫଳପ୍ରଦ ହେଉଥିଲା।"

ସେତେବେଳେ ମୌଳିକ ବା ସ୍ୱାଧୀନ ରଚନା ଅପେକ୍ଷା ଅନ୍ୟ ଭାଷାରୁ ଅନୁବାଦିତ ପୁସ୍ତକ ବିଦ୍ୟାଳୟରେ ଅଧିକ ମାତ୍ରାରେ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ହେଉଥିଲା। ପାଠ୍ୟକ୍ରମରେ ମୌଳିକ ଓଡ଼ିଆ ସାହିତ୍ୟର ସେପରି ସ୍ଥାନ ନଥିଲା।

ବୈକୁଣ୍ଠନାଥ ନିଜ ପିତାଙ୍କ ତୀକ୍ଷ୍ଣ ଅଭିଭାବକତ୍ୱରେ ବର୍ଣ୍ଣ ପରିଚୟ ଓ ସଂଖ୍ୟାଗଣନା ଶିକ୍ଷାରମ୍ଭ କରିଥିଲେ। ତଦନନ୍ତର ପ୍ରାଥମିକ ବିଦ୍ୟାଳୟରେ ନାମ.ଲେଖାଇ ବିଦ୍ୟାଭାସ କରିଥିଲେ। ସେ ପ୍ରତିବର୍ଷ ପ୍ରଶଂସିତ ସ୍ଥାନାଧିକାର କରି ଉଚ୍ଚ ଶ୍ରେଣୀକୁ ଉନ୍ନୀତ ହେଉଥିଲେ। ସେ ଅନ୍ୟାନ୍ୟ ଛାତ୍ରଙ୍କ ଅପେକ୍ଷା ସାହିତ୍ୟ ଓ ଗଣିତରେ ଅଧିକ ପ୍ରବୀଣ ଥିଲେ। ଏହାଙ୍କର ଅନନ୍ୟ ସାଧାରଣ ଧୀଶକ୍ତି ଦେଖି ବରଗଡ଼ର ଉଚ୍ଚ ପ୍ରାଥମିକ ବିଦ୍ୟାଳୟର

ପ୍ରଧାନ ପଣ୍ଡିତ ସହଜରେ ଏହାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ। ସେ ନିଜ ସହକର୍ମୀଗଣଙ୍କ ସମ୍ମୁଖରେ ପ୍ରକାଶ କରିଥିଲେ, "ଏହି ବାଳକ ଉତ୍ତର କାଳରେ ସମ୍ବଲପୁରର ଗୌରବ ରବି ହେବ।" ଏହି ଛାତ୍ରାବସ୍ଥାରେ ସେ ମୁହୂର୍ତ୍ତକ ପାଇଁ ଅଧ୍ୟୟନ କରିବାରେ ଅବହେଳା ପ୍ରକାଶ କରିନାହାନ୍ତି। ସର୍ବଦା ବିନୟ ଭାବରେ ଶିକ୍ଷକଗଣଙ୍କ ଆଜ୍ଞା ପ୍ରତିପାଳନ କରୁଥିଲେ। ତାଙ୍କ ମଧୁର ବ୍ୟବହାର ସହପାଠୀମାନଙ୍କୁ ବଶ କରିଥିଲା।

ଏହି ବିଦ୍ୟାଳୟର ଶିକ୍ଷା ସାଙ୍ଗ କରିବା ପୂର୍ବ ବର୍ଷ ସେ ଯଜ୍ଞପବୀତ ଧାରଣ କରିଥିଲେ।

ସମୟର ଚକ ଯେତେ ଦ୍ରୁତ ବେଗରେ ଗଡ଼ି ଚାଲିଛି ବୈକୁଣ୍ଠନାଥଙ୍କ ପିତା ଦାଶରଥୀଙ୍କ ମାନସିକ ଚିନ୍ତା ସେତିକି ପ୍ରବଳ ହୋଇଉଠୁଛି। ବୈକୁଣ୍ଠନାଥଙ୍କ ଇଂରାଜୀ ଶିକ୍ଷାର ଆବଶ୍ୟକତା ସେ ହୃଦ୍‌ବୋଧ କରି ପାରିଥିଲେ ଓ ଏହାହିଁ ସୁଯୋଗ୍ୟ ପିତୃଦେବ ଦାଶରଥୀଙ୍କ ଏକ ବିଷମ ଚିନ୍ତାର ବିଷୟ ହୋଇ ଉଠିଥିଲା।

ଆଲୋଚ୍ୟ ସମୟରେ ବରଗଡ଼ଠାରେ ଇଂରାଜୀ ଶିକ୍ଷାର ବ୍ୟବସ୍ଥା ହୋଇ ନଥିଲା। ସହରରୁ ବାର ମାଇଲ ଦୂରବର୍ତ୍ତୀ ବରପାଲିରେ ତଦାନିନ୍ତନ ଜମିଦାର ନୃପରାଜ ସିଂହ ନିଜ ପୁତ୍ର ଓ ଅନ୍ୟାନ୍ୟ ମାନଙ୍କ ଶିକ୍ଷା ସୁବିଧା ନିମନ୍ତେ ୧୮୮୪ ଖ୍ରୀ.ଅ.ରୁ ଏକ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ। ଏତଦ୍‌ବ୍ୟତୀତ, କେବଳ ସମ୍ବଲପୁରରେ ଏକ ଇଂରାଜୀ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା। ବରପାଲିରେ ଦାଶରଥୀ ପୂଜାରୀଙ୍କ ଆତ୍ମୀୟ ଅବା ପରିଚିତ ସ୍ୱଜାତୀୟ କେହି ନଥିଲେ। ଆଉ ମଧ୍ୟ ବିଦ୍ୟାଳୟଟି ଉଚ୍ଚ ଇଂରାଜୀ ନୁହେଁ - ସେହି ବିଦ୍ୟାଳୟର ପାଠ ସମାପ୍ତ କଲା ପରେ ସମ୍ବଲପୁର ଯିବାକୁ ହେବ। ଏଥିପାଇଁ ସମ୍ବଲପୁରରେ ନିଜ କକେଇ ପୁଅ ଭାଇ ମଦନ ମୋହନଙ୍କ ତତ୍ତ୍ୱାବଧାନରେ ଦାଶରଥୀ ନିଜ ପୁତ୍ରର ଶିକ୍ଷା ପ୍ରାପ୍ତିର ବ୍ୟବସ୍ଥା କଲେ। ମଦନ ମୋହନ କୃତିତ୍ୱ ସହ ଏଣ୍ଟ୍ରାନ୍‌ସ୍ ପାସ୍ କରି ସ୍ଥାନୀୟ ଜିଲ୍ଲା ଅଫିସରେ ଅଳ୍ପ ଦିନ ପୂର୍ବରେ କିରାଣୀ କାର୍ଯ୍ୟରେ ଯୋଗଦାନ କରିଥିଲେ।ତାଙ୍କ ଚରିତ୍ର ଉଚ୍ଚକୋଟୀର ଥିଲା। ସେ ନିଜେ ମେଧାବୀ ଓ ଅଧ୍ୟବସାୟୀ ଥିଲେ ଏଣୁ ମେଧାବୀ ଓ ଅଧ୍ୟବସାୟୀ ଜଣେ ଆତ୍ମୀୟର ଶିକ୍ଷା ଦାୟିତ୍ୱ ସାନନ୍ଦରେ ଗ୍ରହଣ କଲେ। ବର୍ତ୍ତମାନ ଶିକ୍ଷା ପ୍ରଣାଳୀ ସହିତ ଆଲୋଚ୍ୟ ସମୟର ଶିକ୍ଷା ପ୍ରଣାଳୀ ତୁଳନା କଲେ ଢ଼େର ପାର୍ଥକ୍ୟ ଦେଖାଯାଏ। ଅଳ୍ପଦିନ ମଧ୍ୟରେ ବୈକୁଣ୍ଠନାଥ ନିଜର ଧୀଶକ୍ତି, ଅଧ୍ୟବସାୟ ଓ ଭକ୍ତି ପ୍ରଦର୍ଶନରେ ଆପଣାର ଶିକ୍ଷକଗଣଙ୍କୁ ସନ୍ତୁଷ୍ଟ କରି ପାରିଥିଲେ।

ମାନବର ଭବିଷ୍ୟତ ଅବସ୍ଥା ନିର୍ଣ୍ଣୟର ଦାୟିତ୍ୱ ମାନବର ଆୟତାଧୀନ ନୁହେଁ, ତାହା ଦେବାଧୀନ। ବୈକୁଣ୍ଠନାଥ କର୍ତ୍ତବ୍ୟନିଷ୍ଠ, ଜ୍ଞାନୀ ଓ ଉଚ୍ଚମନା ମଦନ ମୋହନ ପୂଜାରୀଙ୍କୁ ଅଭିଭାବକ ରୂପେ ଲାଭ କରିଥିବା ଦୈବାଧୀନ। ମଦନ ମୋହନ ମଧ ମେଧାବୀ, ସରଳ ଓ ଶାନ୍ତ ସ୍ୱଭାବର ବୈକୁଣ୍ଠନାଥଙ୍କ ଅଭିଭାବକ ହୋଇ ଆପଣା କର୍ମମୟ ଜୀବନକୁ ସାର୍ଥକ ମନେକଲେ। ବୈକୁଣ୍ଠନାଥ ଛାତ୍ରାବସ୍ଥାରୁ ଜାତୀୟ ଗୌରବ ସୃଷ୍ଟି ପାଇଁ ଆକାଂକ୍ଷୀ ଥିଲେ। ନିଜ ଅଭିଭାବକଙ୍କ ପାଖରୁ ସେ ଏ ପ୍ରେରଣା ପାଇଥିଲେ। ସମ୍ବଲପୁର ତଥା ରାୟପୁରରେ କର୍ମ ଜୀବନରେ ମଦନ ମୋହନ ଜିଲ୍ଲାପାଳଙ୍କଠାରୁ ପ୍ରଶଂସା ପତ୍ରମାନ ପାଇଥିଲେ। ସମ୍ବଲପୁରର ଜିଲ୍ଲା ଅଫିସର ସୁପରିନ୍‌ଟେଣ୍ଡେଣ୍ଟ ପଦରୁ ଅବସର ନେଇ ଧର୍ମାଲୋଚନାରେ ଲାଗିଥିଲେ।

ମଦନ ମୋହନ ଉପଲବ୍ଧି କରି ପାରିଥିଲେ ଯେ ମାନସିକ ପରିଶ୍ରମ ସହିତ ଶାରୀରିକ ପରିଶ୍ରମ ଏକାନ୍ତ ପ୍ରୟୋଜନୀୟ, ଉଭୟ ମଧ୍ୟରେ ଘନିଷ୍ଠ ସମ୍ପର୍କ ରହିଛି। ଶାରୀରିକ ଅସୁସ୍ଥତାରେ ମାନସିକ ପ୍ରଫୁଲ୍ଲତା ନଷ୍ଟ ହୁଏ ଏବଂ ତଦ୍ୱାରା ବିଦ୍ୟାର୍ଜନରେ ପ୍ରତିବନ୍ଧକ ସୃଷ୍ଟି ହୁଏ। ବ୍ୟାୟାମ କରିବା ଦ୍ୱାରା ମନ ମଧ୍ୟରେ ଦୁଶ୍ଚିନ୍ତା ପ୍ରବେଶ କରିବାକୁ ଅସମର୍ଥ ହୁଏ, ମନ ପବିତ୍ର ଓ ସ୍ୱଚ୍ଛ ରହେ। ସେ ଏହି କଥା ଆପଣା ଭ୍ରାତୃଷ୍ପୁତ୍ରଙ୍କୁ କହିବାରୁ ବୈକୁଣ୍ଠନାଥ ଆନନ୍ଦ ମନରେ ତାହା ପ୍ରତିପାଳନ କରିଥିଲେ। ମାନସିକ ଓ ଶାରିରୀକ କ୍ରମୋନ୍ନତି ହୋଇଥିଲା। ପ୍ରତିବର୍ଷ ବାର୍ଷିକ ପରୀକ୍ଷାରେ ଭଲ ଫଳ ପ୍ରଦର୍ଶନ କରିବା ଯୋଗୁଁ ସେ ଯେଉଁ ପୁସ୍ତକ ଗୁଡ଼ିକ ପୁରସ୍କାର ସ୍ୱରୂପ ପାଉଥିଲେ ତନ୍ମଧ୍ୟରୁ କେତେକ ଉପର ଶ୍ରେଣୀର ପାଠ୍ୟ ପୁସ୍ତକ ଥିଲା। ଏଣୁ ସେ ସମସ୍ତ ଅଧ୍ୟୟନ କରି ପୂର୍ବରୁ ଜ୍ଞାନ ଆହରଣ କରିବାକୁ ବୈକୁଣ୍ଠନାଥ ସମର୍ଥ ହେଉଥିଲେ। ତାଙ୍କର ଧୀ ଓ ସ୍ମରଣ ଶକ୍ତି ବିଷୟରେ ଏକ ଦୃଷ୍ଟାନ୍ତ ରହିଛି।

କଥିତ ହୁଏ, ଥରେ ମଧ୍ୟ ପ୍ରଦେଶର ପୂର୍ବାଞ୍ଚଳର ଶିକ୍ଷା ବିଭାଗୀୟ ଇନ୍ସପେକ୍ଟର ସମ୍ବଲପୁର ଗସ୍ତରେ ଆସି ଜିଲ୍ଲା ସ୍କୁଲ ପରିଦର୍ଶନ କରିବାକୁ ଗଲେ। ଅନ୍ୟାନ୍ୟ ଶ୍ରେଣୀ ପରିଦର୍ଶନ କରି ବୈକୁଣ୍ଠନାଥଙ୍କ ଶ୍ରେଣୀ ଭିତରେ ପ୍ରବେଶ କଲେ। ସେତେବେଳେ ଶିକ୍ଷକ ଯେଉଁ ପ୍ରଶ୍ନ ପଚାରୁଥାନ୍ତି, ବୈକୁଣ୍ଠନାଥ ସଙ୍ଗେ ସଙ୍ଗେ ତହିଁର ଉତ୍ତର ପ୍ରଦାନ କରୁଥାନ୍ତି। ପରିଦର୍ଶକଙ୍କ ମନରେ ସନ୍ଦେହ ଜାତ ହେଲା ଯେ ପୂର୍ବରୁ କଣ୍ଠସ୍ଥ କରିଥିବା ପ୍ରଶ୍ନୋତ୍ତର ସେଗୁଡ଼ିକ। ତେଣୁ ସେ ନିଜେ କେତେ ଗୁଡ଼ିଏ ପ୍ରଶ୍ନ ପଚାରି ସଙ୍ଗେ ସଙ୍ଗେ ସେଗୁଡ଼ିକର ଯଥାର୍ଥ ଉତ୍ତର ଶୁଣି ବୈକୁଣ୍ଠନାଥଙ୍କ ପ୍ରକୃତ ଜ୍ଞାନରେ ମୁଗ୍ଧ ହୋଇଗଲେ।

ସନ୍ ୧୮୯୨ ରେ ସମ୍ବଲପୁର ଜିଲ୍ଲା ସ୍କୁଲରୁ ଏକା ବୈକୁଣ୍ଠନାଥ ପୂଜାରୀ ଏନ୍‌ଟ୍ରାନ୍‌ସ୍ ପରୀକ୍ଷାରେ ଉତୀର୍ଣ୍ଣ ହୋଇଥିଲେ। ଏନ୍‌ଟ୍ରାନ୍‌ସ୍‌ରେ ଉତୀର୍ଣ୍ଣ ସର୍ବପ୍ରଥମ ପରୀକ୍ଷାର୍ଥୀଙ୍କୁ 'ନିଦର୍ଶଲ ପୁରସ୍କାର' ମିଳିଥାଏ। ମଧ୍ୟ ପ୍ରଦେଶର ବନ୍ଦୋବସ୍ତ କମିଶନର ସ୍ୱର୍ଗୀୟ ମିଷ୍ଟର ଡ଼ବ୍ଲୁ. ନିଦର୍ଶଲଙ୍କ ସ୍ମୃତି ରକ୍ଷା ନିମିତ୍ତ ସମ୍ବଲପୁର ବନ୍ଦୋବସ୍ତ ବିଭାଗୀୟ କର୍ମଚାରୀଗଣ ୧୮୮୯ ଖ୍ରୀଷ୍ଟାବ୍ଦରେ ୪୦୬ ଟଙ୍କା ୬ ଅଣା ଚାନ୍ଦା ଅସୁଲ କରି ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷଙ୍କ ହସ୍ତରେ ଉକ୍ତ ସର୍ତ୍ତରେ ଟଙ୍କାର ସୁଧରୁ ପୁରସ୍କାର ଦେବା ନିମିତ୍ତ ସମର୍ପଣ କରିଥିଲେ।

୧୮୫୦ ଖ୍ରୀ.ଅ. ପହିଲା ଜାନୁଆରୀରେ ଡ଼ାକ୍ତର ଜେ. କେଡ଼େନ୍ ହେଡ଼୍ ବ୍ରିଟିଶ ସରକାରଙ୍କ ପ୍ରତିନିଧି ରୂପେ ସମ୍ବଲପୁରର ଶାସନ ଦାୟିତ୍ୱ ଗ୍ରହଣ କଲା ପରେ ଜିଲ୍ଲାରେ ଅନ୍ୟ ମାଇନର ସ୍କୁଲ ନଥିଲା। ୬ ଟି ମିଡ଼ିଲ ଭର୍ଣ୍ଣାକୁଲାର ଓ ୧୧୩ ଟି ପ୍ରାଇମେରୀ ସ୍କୁଲ ଥିଲା। ଏଥିମଧ୍ୟରୁ ୮ ଟି ସରକାରଙ୍କ ଦ୍ୱାରା ୯୭ ଟି ଜିଲ୍ଲା କାଉନ୍‌ସିଲ୍ ଦ୍ୱାରା ୪ ଟି ପୌରସଭା ଦ୍ୱାରା ଓ ୧୧ ଟି ଲୋକସାଧାରଣଙ୍କ ଦ୍ୱାରା ପରିଚାଳିତ ହେଉଥିଲା। ୧୯୦୧-୦୨ ରେ ଏମ୍.ଭି. ସ୍କୁଲରେ ୧୦୪ ବିଦ୍ୟାର୍ଥୀ ଥିଲେ। ଦ୍ରୁତ ଭାବେ ଏହା ବଢ଼ି ୧୯୦୬-୦୭ ରେ ୧୦୨୭ ଜଣ ବିଦ୍ୟାର୍ଥୀ ହେଲେ। ସମ୍ବଲପୁର ସଦର, ବରଗଡ଼, ଅତାବିରା, ବରପାଲି, ପଦ୍ମପୁର, ବୋଡ଼ାସମ୍ବର ଓ ରମ୍ପେଲାରେ ଗୋଟାଏ ଲେଖାଏଁ ବାଳିକା ୟୁ.ପି. ସ୍କୁଲ ଫିଟିଲା। ଏ ଗୁଡ଼ିକରେ ୮୯୯ ଜଣ ଛାତ୍ରୀ ଓ ବାଳକ ସ୍କୁଲ ଗୁଡ଼ିକରେ ୪୩୩ ଜଣ ଛାତ୍ରୀ, ଏପରି ସର୍ବମୋଟ ୧୩୩୨ ଜଣ ଛାତ୍ରୀ ପଢୁଥିଲେ। ଆଦିବାସୀ ଅନୁନ୍ନତ ବାଳକ ବାଳିକା ପାଇଁ ସ୍ୱତନ୍ତ୍ର ସ୍କୁଲ ନଥିଲା। ବେପଟିସ୍ ମିଶନ୍ ସ୍କୁଲରେ ସେମାନେ ପଢୁଥିଲେ। ବୈଷୟିକ ବିଦ୍ୟାଳୟ ମଧ୍ୟ ନଥିଲା। ସେତେବେଳେ ଲିଖନ, ପଠନ ଓ ଗଣିତ ପାଠ ଛଡ଼ା ଉଦ୍ଭିଦ ବିଜ୍ଞାନ, କୃଷି ବିଜ୍ଞାନ, ଜମି ମାପ, ଜମି ସଂକ୍ରାନ୍ତ ବିଷୟ ପ୍ରଜା ଗୌନ୍ତିଆ ଓ ମାଫଦାରଙ୍କ ସ୍ୱତ୍ୱ ସମ୍ପର୍କରେ ସ୍ଥାନୀୟ ନିୟମ ଆଦି ଶିକ୍ଷା ଦିଆଯାଉଥିଲା। ନୀତି ଶିକ୍ଷା ବି ପାଠ୍ୟକ୍ରମର ଅଙ୍ଗୀଭୂତ ଥିଲା।

ପୂର୍ବକାଳରେ ପ୍ରେମ ବିବାହ ହେଉ ନଥିଲା। କାରଣ, ବିବାହ କଣ ସେ ବିଷୟରେ ବାଳକ ବାଳିକାଙ୍କ ଆଦୌ ଧାରଣା ଜନ୍ମି ନଥିବା ଅବା ପରିଣୟର ଉପଯୋଗିତା ପ୍ରସଙ୍ଗରେ କଳ୍ପନା ସୁଦ୍ଧା କରିପାରିବା ଶକ୍ତି ଜାତ ହୋଇ ନଥିବା ଅଳ୍ପ ବୟସରେ ପିତାମାତାଙ୍କ ଦ୍ୱାରା ପରିଣୟ ବନ୍ଧନରେ ଆବଦ୍ଧ ହେଉଥିଲେ। ଏକାଦଶ ବର୍ଷ ବୟସ୍କ ବୈକୁଣ୍ଠନାଥ ଓ ଅଷ୍ଟମ ବର୍ଷୀୟା ହାସ୍ୟମୟୀ ଜେମାଦେଈଙ୍କୁ ଜୀବନର ସାଥୀ ରୂପେ

ସେମାନଙ୍କ ପିତାମାତା ପାଣାବଦ୍ଧ କଲା ସମୟରେ ଜଣେ ଜଣକର ଖିଆଲ, ରୁଚି, କାର୍ଯ୍ୟଦକ୍ଷତା, କଳାକୁଶଳତା, ବଂଶପରମ୍ପରା ରୀତି ସମ୍ବନ୍ଧରେ ପୁରାପୂରି ଅଜ୍ଞ ଥିଲେ। ହେମାଦେଈଙ୍କ ପିତାଙ୍କ ନାମ ସୋମନାଥ ବାବୁ। ୟାଙ୍କ ପୂର୍ବ ପୁରୁଷଙ୍କ ସଂଜ୍ଞା ଥିଲା ପଣ୍ଡା। ସମ୍ବଲପୁର ରାଜ୍ୟର ଶେଷ ଚୌହାଣ ରାଜା ନାରାୟଣ ସିଂହଙ୍କର ଦ୍ୱିତୀୟା ମହିଷୀ ଜନକ ପ୍ରିୟା କୁମାରୀ ସୋମନାଥଙ୍କୁ ବ୍ରାହ୍ମଣ ପୋଷ୍ୟ ପୁତ୍ର ରୂପେ ଗ୍ରହଣ କଲା ପରେ ସେ ପଣ୍ଡା ସଂଜ୍ଞା ପରିବର୍ତ୍ତେ ବାବୁ ସଂଜ୍ଞା ଧାରଣ କଲେ। ସମ୍ବଲପୁର ଜିଲ୍ଲା ବୋର୍ଡ଼ର ଏକକାଳୀନ ଚେୟାରମେନ ରାୟ ସାହେବ ଗୋକୁଳ ଚନ୍ଦ୍ର ବାବୁ ୟାଙ୍କ ପୌତ୍ର ଓ ଓଡ଼ିଶାର ପୂର୍ବତନ ଆଇନ ମନ୍ତ୍ରୀ ଓ ବର୍ତ୍ତମାନ ପାର୍ଲିଆମେଣ୍ଟର ସଭ୍ୟ ମାନନୀୟ ବନମାଳୀ ବାବୁ ୟାଙ୍କ ପ୍ରପୌତ୍ର।

ସ୍ତ୍ରୀ ଜାତି ସମ୍ପର୍କରେ ମହର୍ଷି ମନୁ କହିଅଛନ୍ତି -

ପିତୃ ଭି ଭ୍ରାତୃ ଭି ଶ୍ଚୈତାଃ ପତିଭି ଦେବରୈସ୍ତଥା ।
ପୂଜ୍ୟା ଭୂଷୟିତାବ୍ୟାଶ୍ଚ ବହୁକଲ୍ୟାଣ ମୀପ୍ସୁଭିଃ ।।

ବହୁ କଲ୍ୟାଣ ଲାଭ ବାସନା ଥିଲେ ପିତା, ଭ୍ରାତା, ଦେବର ଓ ପତି ସମସ୍ତେ ସ୍ତ୍ରୀଗଣଙ୍କୁ ସମ୍ମାନୀତ ଓ ବିଭୂଷିତ କରିବା ବିଧେୟ।

ତା'ପରେ କର୍ମବାଦୀ ହିନ୍ଦୁଗଣଙ୍କ ନିମନ୍ତେ ଏକ ଅତି ପ୍ରରୋଚକ ଉପଦେଶ ରହିଛି -

ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।
ଯତ୍ରୈତାସ୍ତୁ ନ ପୂଜ୍ୟନ୍ତେ ସର୍ବାସ୍ତତ୍ରାଫଳାଃ କ୍ରିୟାଃ ।।

ହିନ୍ଦୁଗଣ ଦେବତାଙ୍କ କୃପା ଲାଭ ନିମିତ୍ତ କେତେ ଦୁଃସାଧ୍ୟ ତପସ୍ୟା ଓ କଠୋର ନିୟମ ବ୍ରତାଦି ପାଳନ କରିବାକୁ ଉଦ୍‌ଗ୍ରୀବ ରହନ୍ତି କେବଳ ମାତ୍ର ରମଣୀଙ୍କୁ ଆଦର କରିବା ଦ୍ୱାରା ଯେବେ ସେହି ଦୁର୍ଲଭ ଫଳ ପ୍ରାପ୍ତି ହୁଏ ତାହା ଉପେକ୍ଷା କରାଯାଇ ପାରେ କି ? ବୈକୁଣ୍ଠନାଥ ନିଜ ପତ୍ନୀ ପ୍ରତି ହେୟ ବ୍ୟବହାର କରୁ ନଥିଲେ, ତାଙ୍କ ସ୍ୱାଧୀନତାରେ ଅର୍ଥାତ ମାନବିକ ଅଧିକାରରେ ହସ୍ତକ୍ଷେପ କରୁ ନଥିଲେ। କହିବାକୁ ହେବ ଉଭୟଙ୍କ ଅନୁକୂଳ ସ୍ୱଭାବ ଥିଲା।

ଭ୍ରାତୃଜାୟାଙ୍କୁ ସୀତା ଓ ସାବିତ୍ରୀ ଆଦିଙ୍କ ସହ ତୁଳନା କରି ନୀଳକଣ୍ଠ ତା ୧୭-୦୨-୧୮୯୭ ସାଲରେ ବୈକୁଣ୍ଠନାଥଙ୍କୁ ଲେଖିଥିଲେ -

" The part your wife played on this occasion urges me to write that she is as good as her word. Her act, so faithful and truthful in its manner has that magic power which made me remember those Standard Women - Sita and Savitri - and others of the kind who had at one time raised India to the highest pitch of glory - etc. etc."

ଦ୍ବିରାଗମନ ପରେ ଅଳ୍ପଦିନ ପରେ ବୈକୁଣ୍ଠନାଥ ଉଚ୍ଚ ଶିକ୍ଷା ଲାଭ ନିମିତ୍ତ ନାଗପୁର ଯାତ୍ରା କଲେ। ଅଧ୍ୟୟନ ହିଁ ଏକମାତ୍ର ଚିନ୍ତା ଥିବାରୁ ଏ ବିରହରେ ସେ ବ୍ୟଥିତ ହୋଇ ନଥିଲେ। ସେ ଥିଲେ ଭୋଗ ବିଳାସରେ ନିସ୍ପୃହ। ଦୂର ବିଦେଶରୁ ପତ୍ନୀଙ୍କ ପାଖକୁ ସେ ନିୟମିତ ଭାବରେ ଯେଉଁ ପତ୍ର ଲେଖୁଥିଲେ ସେଗୁଡ଼ିକ ଆସଙ୍ଗ ଲିପ୍‌ସା ପରିବର୍ତ୍ତେ ଉଚ୍ଚାଙ୍ଗର ଉପଦେଶମୂଳକ ଥିଲା। ଗଭୀର କ୍ଷୋଭର ବିଷୟ ଯେ ସେହି ଉପାଦେୟ ଓ ଶିକ୍ଷଣୀୟ ପତ୍ରଗୁଡ଼ିକ ସଯତ୍ନରେ ସଂରକ୍ଷିତ ହୋଇ ପାରିନାହିଁ। ସଂଗୃହୀତ ତିନୋଟି ଛିନ୍ନ ପତ୍ରର ବିଷୟ ବସ୍ତୁ ପାଠକ ପାଠିକାଙ୍କ ଅବଗତି ନିମିତ୍ତ ପ୍ରକାଶ କରାଯାଉଛି -

ପ୍ରଥମ ପତ୍ରର ଛିନ୍ନାଂଶ - ଏଥିରେ ଆଚରଣର ବ୍ୟାଖ୍ୟା ସହ ପଣ ରକ୍ଷା ନିମିତ୍ତ ଉପଦେଶ ରହିଥିଲା -

"ଆଚରଣ ପ୍ରତି ସବୁବେଳେ ନଜର ରଖିବା ଉଚିତ। ଆଉ ସବୁ କଥା ଆଡ଼େ ଆଉ ଆଚରଣ କେବଳ ଆଡ଼େ। ଆଚରଣ ମାନେ ସତ୍ୟ କହିବା, ସୁମିଷ୍ଟ ବାକ୍ୟ କହିବା, କାହାରି ପ୍ରତି ଘୃଣା ନ କରିବା, କାହାକୁ ଅସଦ୍ ବ୍ୟବହାର ନକରି ସମସ୍ତଙ୍କୁ ସୁଖୀ କରାଇବା, ଈଶ୍ୱରଙ୍କ ପ୍ରତି ନିର୍ଭର ରଖି ଆପଣା କର୍ତ୍ତବ୍ୟ କର୍ମରେ ନିଯୁକ୍ତ ହେବା ଇତ୍ୟାଦି।

ଶ୍ରୀମତୀର ପଢ଼ାଶୁଣା ବିଷୟରେ ମୁଁ ତତେ କାନେ କାନେ କହି ଆସିଥିଲି ଏବଂ ତୁ ଉତ୍ତର ଦେଇଥିଲୁ ଯେ ତୁମ୍ଭେମାନେ ଗଲା ପରେ ତାଙ୍କୁ ପଢ଼ାଇ ଦେବି; କିନ୍ତୁ ଶୁଣିଲି ଆମ୍ଭେମାନେ ଆସିଲା ବେଳେ ଯେପରି ଥିଲା ସେହିପରି ଏବେ ବରଂଚ ଯାହା ଟିକିଏ ଅଧେ ଆସୁଥିଲା ତାହା ଭୁଲିଗଲାଣି। ଯେବେ ଏହା ସତ୍ୟ ହୁଏ ତେବେ ଏହାର ପ୍ରତିକାର କରିବା ଉଚିତ। ସେ ପଢ଼ିବାରେ ମନ ନଦେଲା ବୋଲି ତୁମ୍ଭେମାନେ ପଢ଼ାଇବାରେ ମନ ନଦେବା ବଡ଼ ଦୁଃଖ ଓ ଲଜ୍ଜାର ବିଷୟ। ଭରସା କରେଁ ଏବେ ତତ୍‌ପ୍ରତି ତୁ ମନ ଦେଇ ଆପଣା ଅଙ୍ଗୀକାରକୁ ପୂର୍ଣ୍ଣ କରିବୁ।"

ଦ୍ୱିତୀୟ ପତ୍ରର ଛିନ୍ନାଂଶ - ଏଥିରେ ପରିବାର ଭିତରେ ପତି ଓ ପତ୍ନୀ ଏକ

ମନରେ କର୍ତ୍ତବ୍ୟ ସମ୍ପାଦନ କରିବା ସମ୍ପର୍କରେ ଉପଦେଶ ପ୍ରଦାନର ସୂଚନା ମିଳେ -

"ଦେଖ, ପ୍ରତିଦିନ ଆମ୍ଭେ ଗାଡ଼ି ଦେଖୁଅଛୁଁ। ଦୁଇଗୋଟି ବଳଦ, ସେମାନେ ଗାଡ଼ିର ଦଣ୍ଡା କାନ୍ଧରେ ଧରି ଗାଡ଼ିକୁ ଘିଚିବାକୁ ପଡ଼େ। ସେମାନେ ଗାଡ଼ିକୁ ଯଥା ସ୍ଥାନରେ ପହଞ୍ଚାଇବା ନିମନ୍ତେ ଅନେକ ମାଇଲ କେତେବେଳେ ସମାନ ପଥ କେତେବେଳେ ବା ଉଚ୍ଚ ନୀଚ ଗାଡ଼ ଖାଲ ବା ଜଙ୍ଗଲ ପଥରେ ଯାଆନ୍ତି, ଯିବା ପଥ ଉଚ୍ଚ ହେଉ ଅବା ନୀଚ ହେଉ। ପଥ ଭଲ ହେଉ ଅବା ମନ୍ଦ ହେଉ। ଗାଡ଼ି ଭଙ୍ଗା ହେଉ ଟୁଟା ହେଉ, ଖାଲି ହେଉ ବୁଝାଇ ହେଉ ଯାହା କିଛି ହେଉ ବଳଦ ଦୁହେଁ ସମାନ ଭାବରେ ଚାଲିବା ଉଚିତ। ଯେବେ ଗୋଟିଏ ବଳଦ ଚନଚନା ଆଉ ଗୋଟେ ଗଧା ହେଲା ତେବେ ଆଉ ରକ୍ଷା ନାହିଁ। ବଳଦ ଦୁହିଁଙ୍କର କଷ୍ଟର ଶେଷ ନାହିଁ। ଗଧା ବଳଦ ଯେତିକି ଅଧିକ ଓଟାରି ହେବ ଚନଚନା ବଳଦ ସେତିକି ଅଧିକ ଓଟାରି ହେବ। ଗାଡ଼ି ସୁଦ୍ଧା ଘିଚା ଓଟରାରେ ଧୀରେ ଧୀରେ ଚୂର୍ଣ୍ଣବିଚୂର୍ଣ୍ଣ ହେବ।"

ତୃତୀୟ ପତ୍ରର ଛିନ୍ନାଂଶ - ଏଥିରେ ପୂର୍ବ ପୁରୁଷଗଣଙ୍କ ଆଚରିତ ପଥାନୁଶରଣ କରିବା ପାଇଁ ଉପଦେଶ ଦିଆ ହୋଇଅଛି -

" + + + + ସେହିପରି ଆମ୍ଭେମାନେ ଏହି ପ୍ରବଳ ଜୀବ ସ୍ରୋତରେ ଭାସି ଆସି ମୁଣ୍ଡ ଘାଟ ପରି ଗୋଟାଏ ଘାଟରେ ଅଳଝି ଅଛୁଁ। ଦୃଷ୍ଟି ନିକ୍ଷେପ କଲେ ଦେଖାଯିବ ଯେ ଏହି ଘାଟର ପାଉଛ ସବୁ ବଡ଼ ସାନ ସାନ ଏଣୁ ଚଢ଼ିବାକୁ କଷ୍ଟ ହୁଏ (ଏହି ପାଉଛ ସବୁ ଆମ୍ଭ ପୂର୍ବପୁରୁଷମାନେ କାଟି ଅଛନ୍ତି)। କିନ୍ତୁ ବଡ଼ ପିଚ୍ଛିଳ ଓ ପାଉଛର ଦୁଇ ପାର୍ଶ୍ୱରେ ଅନେକ ହୁଡ଼ା ଅର୍ଥାତ୍ ଗର୍ତ୍ତ। ସେହି ପାଉଛ ଦେଇ ଅନେକ ଅସଂଖ୍ୟ ଲୋକେ ଯୁଡ଼ି ହୋଇ ଉପରକୁ ଚଢୁଛନ୍ତି ଓ ଆମ୍ଭମାନଙ୍କୁ ସୁଦ୍ଧା ଉପରକୁ ଚଢ଼ିବାକୁ ହେବ।

ଦେଖୁଛୁ ଯେ ଆମ୍ଭ ଆଗରେ ଅଜା ଆଇ, ପିତା ମାତା, ଶାଶୁ ଶ୍ୱଶୁର, କକା କାକୀ, ମଉସା ମାଉସୀ ବଡୁ ବଡ଼ାଇ ଏବଂ ଅନ୍ୟାନ୍ୟ ଅନେକ ଯୁଡ଼ି ସିଧା ଉପରକୁ ଚଢ଼ିବାକୁ ପ୍ରାଣପଣରେ ଚେଷ୍ଟା କରୁ ଅଛନ୍ତି। କିଏ ବା ହୁଡ଼ମୁଡ଼ାଇ ଯାଉଅଛି, କାହାକୁ ବାଟ ବା ଦିଶୁନାହିଁ କିଏ ବା ପିଛିଲି ପଡୁଅଛନ୍ତି। କିଏ ବା କ୍ଳାନ୍ତ ହୋଇ ବସି ପଡୁଅଛି ଆଉ କେତେ ଅବିଶ୍ରାନ୍ତ ଭାବେ ଧୀରେ ଧୀରେ ସିଧା ଉପରକୁ ଯାଉଅଛନ୍ତି - ଏହିପରି ଲାଗିଅଛି। କିନ୍ତୁ ତୋତେ ଗୋଟିଏ କଥା ପଚାରୁଅଛି ଯେ ପ୍ରଥମେ ଏ ସମସ୍ତେ ଯୋଡ଼ି ଯୋଡ଼ି ହୋଇ କାହିଁକି ଆବଦ୍ଧ ?"

ପ୍ରଖର ମେଧା ଏବଂ ପ୍ରଗାଢ଼ ଅଧ୍ୟବସାୟ ବୈକୁଣ୍ଠନାଥଙ୍କୁ ୧୮୯୨ ଖ୍ରୀଷ୍ଟାବ୍ଦରେ କଠିଣ ଏଣ୍ଟ୍ରାନ୍‌ସ୍ ପରୀକ୍ଷାରେ କୃତକାର୍ଯ୍ୟ କରିଥିଲା । ଏହାହିଁ ତାଙ୍କୁ ଉଚ୍ଚ ଶିକ୍ଷାର ସରଣୀରେ ଉପନୀତ କରାଇଦେଲା । ତାଙ୍କ ପୂର୍ବରୁ ୯ ବର୍ଷ ଭିତରେ ଯେଉଁ ୧୭ ଜଣ ଏଣ୍ଟ୍ରାନ୍‌ସ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ସେମାନଙ୍କ ମଧ୍ୟରୁ ୫ ଜଣ ଅଣଓଡ଼ିଆ ଅବଶିଷ୍ଟ ୧୨ ଜଣଙ୍କ ମଧ୍ୟରୁ ୪ ରାମପ୍ରସାଦ ବହିଦାର ଓ ୪ ଚନ୍ଦ୍ରଶେଖର ବେହେରା ଉଚ୍ଚ ଶିକ୍ଷା ପ୍ରାପ୍ତ ହୋଇଥିଲେ । ଚନ୍ଦ୍ରଶେଖର ବେହେରା କିଛି ଦିନ ସମ୍ବଲପୁରରେ ଶିକ୍ଷକତା କଲା ପରେ ନାଗପୁର ଯାଇ ମହାବିଦ୍ୟାଳୟରେ ଯୋଗଦାନ କରିବାରୁ ସେ ବୈକୁଣ୍ଠଙ୍କଠାରୁ ଶିକ୍ଷାରେ ପଛେଇ ଯାଇଥିଲେ । ରାମପ୍ରସାଦଙ୍କଠାରୁ ମଧ୍ୟ ବୈକୁଣ୍ଠନାଥ ଆଗେଇଥିଲେ ।

ଚାରି ବର୍ଷ ପୂର୍ବରୁ ଝାରସୁଗୁଡ଼ା ଦେଇ ହାବଡ଼ାରୁ ନାଗପୁର ପର୍ଯ୍ୟନ୍ତ ରେଳ ରାସ୍ତା ଫିଟି ରେଳ ଚଳାଚଳ ବି ହେଉଥିଲା ହେଲେ ହେଁ ଝାରସୁଗୁଡ଼ା-ସମ୍ବଲପୁର ଶାଖା ରେଳରାସ୍ତା ୧୮୯୪ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିର୍ମିତ ହୋଇ ନଥିଲା । ଉଭୟ ସ୍ଥାନର ମଧ୍ୟବର୍ତ୍ତୀ ନିବୀଡ଼ ଅରଣ୍ୟ ପ୍ରଦେଶ ଏକାକୀ ପଦବ୍ରଜରେ ଅତିକ୍ରମ କରିବାକୁ କେହି ସାହସ କରୁ ନଥିଲେ । ହିଂସ୍ରଜନ୍ତୁର ଆକ୍ରମଣ ଭୟ ସଙ୍ଗେ ଚୋର ଖଣ୍ଟଙ୍କ ଦ୍ୱାରା ଆକ୍ରାନ୍ତ ହେବା ଭୟ ମଧ୍ୟ ଥିଲା । ସେତେବେଳେ ଓଡ଼ିଆରେ ବିଶେଷ ଜ୍ଞାନ ଓ ଇଂରାଜୀରେ ସାଧାରଣ ଜ୍ଞାନ ଲାଭ କରି ମଧ୍ୟ ଲୋକମାନେ ଭଲ ଚାକିରୀ ପାଉଥିବାରୁ ପୌଢ଼ମାନେ ପୁତ୍ର ପୌତ୍ରାଦିଙ୍କୁ ମଧ୍ୟପ୍ରଦେଶର ରାଜଧାନୀ ଦୂରବର୍ତ୍ତୀ ନାଗପୁର ପରି ବଡ଼ ନଗରକୁ ଉଚ୍ଚ ଶିକ୍ଷା ଉଦ୍ଦେଶ୍ୟରେ ପ୍ରେରଣ କରିବାକୁ ଆଦୌ ଇଚ୍ଛୁକ ହେଉ ନଥିଲେ । ଦାଶରଥୀ ପୂଜାରୀ କିନ୍ତୁ ଏହି ପ୍ରତିବନ୍ଧକ ହେତୁ ପୁତ୍ରର ଉଚ୍ଚ ଶିକ୍ଷା ସ୍ପୃହା ଧୂଳିସାତ୍ କରିବାକୁ ଚାହିଁ ନଥିଲେ । ବୈକୁଣ୍ଠନାଥଙ୍କ ନାଗପୁର ଯାତ୍ରାର ସମସ୍ତ ବନ୍ଦୋବସ୍ତ କଲେ । ଏ ସମୟରେ ଭ୍ରାତୃବତ୍ସଳ ନୀଳକଣ୍ଠ ବୈକୁଣ୍ଠନାଥଙ୍କ ଅନୁଗାମୀ ହେବାକୁ ଇଚ୍ଛା କଲେ । ନୀଳକଣ୍ଠଙ୍କ ବୟସ ପ୍ରାୟ ତ୍ରୟୋଦଶ – ଏ ବୟସରେ ତାଙ୍କୁ ବିଦେଶକୁ ପଠାଇବାକୁ ସାଧାରଣତଃ କୌଣସି ପିତାଙ୍କ ମନ ବଳିବ ନାହିଁ । ଦାଶରଥୀ ଉପଲବ୍ଧି କରିଥିଲେ ଯେ ବୈକୁଣ୍ଠନାଥ ଓ ନୀଳକଣ୍ଠ ରାମ ଓ ଲକ୍ଷ୍ମଣଙ୍କ ପରି କେହି କାହାରି ପାଖରୁ ପୃଥକ୍ ହୋଇ ରହି ନପାରନ୍ତି; ଏଣୁ ଏହି ପ୍ରସ୍ତାବରେ ସେ ସମ୍ମତ ହେଲେ ।

ନିର୍ଦ୍ଧାରିତ ଦିବସରେ ଉଭୟ ଭ୍ରାତା ଅନ୍ୟ କେତେଜଣ ନାଗପୁର ଯାତ୍ରୀଙ୍କ ସହିତ ଝାରସୁଗୁଡ଼ା ଅଭିମୁଖରେ ଯାତ୍ରା କଲେ । ଝାରସୁଗୁଡ଼ାରେ ପହଞ୍ଚି ହାବଡ଼ା-ନାଗପୁର ପେସେଞ୍ଜର ଗାଡ଼ିରେ ଆରୋହଣ କରି ନାଗପୁର ଯାତ୍ରା କଲେ । ନାଗପୁରରେ ହିସଲପ

କଲେଜରେ ବୈକୁଣ୍ଠନାଥ ପ୍ରବେଶ ଲାଭ କଲେ ଓ ନୀଳକଣ୍ଠ ହିସଲପ କଲେଜିଏଟ୍ ସ୍କୁଲରେ ୮ମ ଶ୍ରେଣୀରେ ପ୍ରବେଶ କଲେ। ସେଠାରେ ଛାତ୍ରାବାସ ସଂଲଗ୍ନରେ କ୍ଷୁଦ୍ର ଗୃହ ଗୋଟିଏ ଭଡ଼ାରେ ନେଇ ବାସ କଲେ। ନିଜ ଜିଲ୍ଲାର ବ୍ରାହ୍ମଣ ରୋଷେଇ ଆହାର ପ୍ରସ୍ତୁତ କରୁଥିଲା। କ୍ରମାଗତ ଚାରିବର୍ଷ ଅଧ୍ୟୟନ କରି ବୈକୁଣ୍ଠନାଥ ୧୮୯୬ ଖ୍ରୀଷ୍ଟାବ୍ଦରେ ବିଶ୍ୱବିଦ୍ୟାଳୟରୁ ବି.ଏ. ଉପାଧି ଗ୍ରହଣ କଲେ। ନାଗପୁରର ହିସଲପ ମହାବିଦ୍ୟାଳୟରେ ସେ ରସାୟନ ବିଦ୍ୟାରେ ବିଶେଷ ପାରଦର୍ଶିତା ଲାଭ କରିବା ନିମନ୍ତେ ପିତ୍ରାଦେଶ ନେଇ କଲିକତା ଯାତ୍ରା ଉଦ୍ଦେଶ୍ୟରେ ଉଭୟ ଭ୍ରାତା ୧୮୯୭ ଜୁନ ମଧ୍ୟ ଭାଗରେ ରେଢ଼ାଖୋଲ ରାମପୁର ପରିତ୍ୟାଗ କଲେ। କଲିକତା ପହଞ୍ଚି ପ୍ରେସିଡ଼େନ୍‌ସୀ କଲେଜରେ ବୈକୁଣ୍ଠନାଥ ଏମ୍.ଏ. ଶ୍ରେଣୀରେ ପ୍ରବିଷ୍ଟ ହେଲେ। ତାଙ୍କ ଅନୁଗାମୀ ଭ୍ରାତା ନୀଳକଣ୍ଠ ସିଟି କଲେଜର କଲେଜିଏଟ୍ ସ୍କୁଲରେ ଏଣ୍ଟ୍ରାନ୍‌ସ୍ ଶ୍ରେଣୀରେ ନାମ ଲେଖାଇଲେ। ହିସଲପ କଲେଜର ଅଧ୍ୟାପକ ଓ ଅଧ୍ୟକ୍ଷ ବୈକୁଣ୍ଠନାଥଙ୍କ ବିଦ୍ୟାର୍ଜନ ବିଷୟରେ ଉଚ୍ଚ ଧାରଣା ପୋଷଣ କରିଥିଲେ। ପ୍ରେସିଡ଼େନ୍‌ସୀ କଲେଜର ରସାୟନ ବିଷୟରେ ଭଲ ନମ୍ବର ଲାଭ କରିଥିବାରୁ କଲେଜର ଅଧ୍ୟକ୍ଷ ତାଙ୍କୁ ଶୋଧିତ ସୁରାରେ ପ୍ରଜ୍ୱଳିତ ହେବା ବତୀ ଗୋଟାଏ ଉପହାର ଦେଇଥିବା ଶୁଣି ନାଗପୁରରୁ ମିଷ୍ଟର ଆଲେକଜାଣ୍ଡର ରବର୍ଟସନ ଆନନ୍ଦ ପ୍ରକାଶ କରି ବୈକୁଣ୍ଠନାଥଙ୍କ କଲିକତା ଠିକଣାରେ ୧୮୯୬ ଫେବୃଆରୀ ୨୫ ତାରିଖରେ ଖଣ୍ଡିଏ ପତ୍ର ଲେଖିଥିଲେ। ୧୮୯୭ ଖ୍ରୀଷ୍ଟାବ୍ଦରେ ରସାୟନ ବିଷୟରେ ସମସ୍ତ ପରୀକ୍ଷାର୍ଥୀଙ୍କ ମଧ୍ୟରେ ଦ୍ୱିତୀୟ ସ୍ଥାନ ଅଧିକାର କରି ଦ୍ୱିତୀୟ ବିଭାଗରେ ବୈକୁଣ୍ଠନାଥ ଉତ୍ତୀର୍ଣ୍ଣ ହୋଇଥିଲେ। ପ୍ରଥମ ସ୍ଥାନାଧିକାରୀ ପରୀକ୍ଷାର୍ଥୀ ବି ଦ୍ୱିତୀୟ ବିଭାଗରେ ଉତ୍ତୀର୍ଣ୍ଣ ହୋଇଥିଲେ। ବୈକୁଣ୍ଠନାଥ ଏମ୍.ଏ. ଶ୍ରେଣୀରେ ପ୍ରବିଷ୍ଟ ହେବା ସମୟରେ ହୃଦୟ ଭିତରେ ପ୍ରବଳ ଆକାଂକ୍ଷା ପୋଷଣ କରିଥିଲେ ଯେ ଯେବେ ସେ ପ୍ରଥମ ବିଭାଗରେ ଉତ୍ତୀର୍ଣ୍ଣ ହେବେ ତେବେ ସେହି ରସାୟନ ବିଦ୍ୟାରେ ଅଧିକ ଜ୍ଞାନ ଲାଭ ନିମିତ୍ତ କୌଣସି ପାଶ୍ଚାତ୍ୟ ଦେଶକୁ ଯାତ୍ରା କରିବେ। ମନୁଷ୍ୟର ଭାବନା, ମନୁଷ୍ୟର କଳ୍ପନା ସର୍ବଦା କାର୍ଯ୍ୟକାରୀ ହୋଇପାରେ ନାହିଁ। ଏକ ଧ୍ୟାନରେ ବୈକୁଣ୍ଠନାଥ ଅଧ୍ୟୟନରେ ରତ ହୋଇଛନ୍ତି ମନକୁ ସତେଜ ରଖିବା ପାଇଁ ନିୟମିତ ବ୍ୟାୟାମର ଅଭ୍ୟାସ ବି ରହିଛି। ପରୀକ୍ଷା ସମୟ ଯେତିକି ନିକଟ ହେଉଛି ସେତିକି ଉତ୍ସାହରେ ପ୍ରସ୍ତୁତ ହେଉଅଛନ୍ତି: ଅଦୃଷ୍ଟର କି ପରିହାସ ! ନିର୍ମଳ ଆକାଶ - କାହୁଁ ସହସା ପ୍ରବଳ ପ୍ରଭଞ୍ଜନ ଉଠି ଲୋକଙ୍କୁ ଯେପରି ହତବୁଦ୍ଧି କରେ, ବିଷମ ମ୍ୟାଲେରିଆ ରୋଗ ସହସା ବୈକୁଣ୍ଠନାଥଙ୍କୁ ଆକ୍ରମଣ କରି ଅସ୍ଥିର କଲା।

ଅଧ୍ୟୟନରେ ବିଘ୍ନ ସୃଷ୍ଟି କରି ତାଙ୍କ ପୂର୍ବ କଳ୍ପନାକୁ ଧୂଳିସାତ୍ କରିଥିଲା । ହୃଦୟର ଗଭୀରତମ ପ୍ରଦେଶରୁ ଦିନେ ଯେଉଁ ଆଇନ ଶିକ୍ଷାକୁ ସେ ଘୃଣା କରୁଥିଲେ ଶେଷକୁ ସେହି ଶିକ୍ଷା ଲାଭ କଲେ । ଏହି ପ୍ରସଙ୍ଗରେ ନିଜ ସହୋଦର ନୀଳକଣ୍ଠଙ୍କୁ ୧୮୯୯ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ୧୦ ତାରିଖରେ ବୈକୁଣ୍ଠନାଥ ଏହିପରି ପତ୍ର ଖଣ୍ଡେ ଲେଖିଥିଲେ :-

" Law was a subject which I hated once from the bottom of my heart. But, I was to study it and a vigorous effort to master the subject brings me round and makes me see what precious gems are buried under that dry term. It is none so much for its emoluments that I love the subject but because there lies hidden under those outwardly interesting words and definitions a treasure which can occupy the minds with its most serious efforts and which can bring untold happiness and pleasures to one who has the patience and energy enough to pry into its secrets. And so I think with the case of every other science."

"ଆଇନ ଏପରି ଏକ ବିଷୟ ଥିଲା ଯାହାକୁ ଏକଦା ମୁଁ ମୋର ଅନ୍ତଃକରଣର ଗଭୀରତମ ପ୍ରଦେଶରୁ ଘୃଣା କରୁଥିଲି । କିନ୍ତୁ ମୋତେ ସେହି ଆଇନ ଅଧ୍ୟୟନ କରିବାକୁ ହେଲା ଏବଂ ବିଷୟକୁ ଆୟତ୍ତ କରିବା ନିମିତ୍ତ ପ୍ରବଳ ଉଦ୍ୟମ କରିବା ଯୋଗେ ଭାବାନ୍ତର ଆଣିଦେଲା ଏବଂ ସୂଚାଇ ଦେଲା ସେହି ଶୁଷ୍କ ସଂଜ୍ଞା ଭିତରେ କି ଭଳି ବହୁମୂଲ୍ୟ ରତ୍ନ ଲୁକ୍କାୟିତ ରହିଛି । କେବଳ ଲାଭଜନକ ବୋଲି ଏ ବିଷୟ ପ୍ରତି ମୋର ଆସକ୍ତି ଜାତ ହୋଇନାହିଁ, ଜାତ ହୋଇଛି ବାହ୍ୟତଃ ଅମନୋରଞ୍ଜନ ସଂଜ୍ଞା ଓ ବ୍ୟାଖ୍ୟା ମଧ୍ୟରେ ଅମୂଲ୍ୟ ଜ୍ଞାନ ନିହିତ ରହିଛି ବୋଲି । ଗୁରୁତର ଉଦ୍ୟମ ଫଳରେ ମନ ଭିତରେ କ୍ରମେ ଏହି ଭାବ ପ୍ରବେଶ କରେ ଏବଂ ଅକଥନୀୟ ଆନନ୍ଦ ଓ ସୁଖ ଆନୟନ କରେ । ଅବଶ୍ୟ ଲୋକ, ରହସ୍ୟ ଭେଦ କରିବାକୁ ଯଥେଷ୍ଟ ଧୈର୍ଯ୍ୟ ଓ ଉତ୍ସାହ ଧାରଣ କରିଥିବ; ଏବଂ ଏଣୁ ମୁଁ ଭାବୁଛି ଅନ୍ୟ ପ୍ରତ୍ୟେକ ଜ୍ଞାନ ବିଭାଗ ପ୍ରତି ଏହା ପ୍ରଯୁଜ୍ୟ ଅଟେ ।"

ବୈକୁଣ୍ଠନାଥ ନିଜ ଭିଣୋଇ ସ୍ୱର୍ଗୀୟ ଚନ୍ଦ୍ରଶେଖର ବେହେରାଙ୍କୁ ଡ଼ିସେମ୍ବର ୧୫ ତାରିଖ ୧୮୯୮ ଖ୍ରୀଷ୍ଟାବ୍ଦରେ ନିମ୍ନମତେ ଜଣାଇଥିଲେ -

" I do not expect to be an E.A.C. at all nor do I aspire for Government Service if it please God to make me successful in the Pleadership Examination."

"ଯେବେ ଭଗବାନଙ୍କ ଅନୁକମ୍ପା ଯୋଗୁଁ ମୁଁ ଓକିଲାତି ପରୀକ୍ଷାରେ କୃତକାର୍ଯ୍ୟ ହୁଏଁ ତେବେ ମୁଁ ଅତିରିକ୍ତ ସହକାରୀ କମିଶନର ହେବା ଆଶା ଆଦୌ ପୋଷଣ କରେଁ ନାହିଁ କିମ୍ବା ସରକାରୀ ଚାକିରୀର ଉଚ୍ଚାଭିଳାଷ ପୋଷଣ କରେ ନାହିଁ।"

ହିସଲ୍‌ପ କଲେଜର ଛାତ୍ରମାନେ ବାଇବେଲ ସମ୍ବନ୍ଧରେ ପରୀକ୍ଷା ଦେଉଥିଲେ। କଲେଜର ପୂର୍ବତନ ଅଧକ୍ଷ ମିଷ୍ଟର ହୁଇଟନ ବିଗତ ଦୁଇ ବର୍ଷର ଫଳ ଜଣାଇ ଦେଇଥିଲେ ଓ ସେଥିରେ ବୈକୁଣ୍ଠନାଥ ଦ୍ୱିତୀୟ ସ୍ଥାନ ପାଇ ଦ୍ୱିତୀୟ ପୁରସ୍କାର ପାଇବେ ବୋଲି ନୂତନ ଅଧକ୍ଷ ମିଷ୍ଟର ରବର୍ଟସନ ୧୮୯୬ ସାଲ ୨୫ ତାରିଖ ମାର୍ଚ୍ଚରେ ତାଙ୍କୁ ଜଣାଇ ଦେଇଥିଲେ, ସେ କେବଳ ଟଙ୍କା ପୁରସ୍କାର ନେବେ ଅବା ଉପଯୋଗାର୍ଥକ ସଂକ୍ଷିପ୍ତ ଲେଖା ସହିତ ଖଣ୍ଡିଏ ପୁସ୍ତକ ଓ ଅବଶିଷ୍ଟ ଟଙ୍କା ନେବେ। ପୁସ୍ତକ ନେବାକୁ ଚାହିଁଲେ ପୁସ୍ତକର ନାମ ଲେଖିବାକୁ ଲେଖିଥିଲେ।

ପାରିବାରିକ ଜୀବନରୁ ଏକା ମନୁଷ୍ୟର ବାସ୍ତବ ସ୍ୱରୂପ ପ୍ରକାଶିତ ହୁଏ। ବୈକୁଣ୍ଠନାଥ ଦେବକୀ ଦେବୀଙ୍କ ଦ୍ୱିତୀୟ ଗର୍ଭରୁ ଜନ୍ମଲାଭ କରିଥିଲେ ହେଁ ପୁତ୍ର ହିସାବରେ ସେ ଜ୍ୟେଷ୍ଠ। ଏଣୁ କନିଷ୍ଠ ଭ୍ରାତା ମାନଙ୍କ ଓ ଭଗ୍ନୀଙ୍କର ସମସ୍ତ ବିଷୟରେ ସେ ତତ୍ତ୍ୱ ନେଉଥିବା ସ୍ୱାଭାବିକ। ତାଙ୍କ ଜ୍ୟେଷ୍ଠା ଭଗ୍ନୀଙ୍କୁ ଯେ କେବଳ ସମ୍ମାନ ପ୍ରଦର୍ଶନ କରୁଥିଲେ ତାହା ନୁହେଁ, ଭଗ୍ନୀ ବିବାହ ହେବା ପରେ ମଧ ତାଙ୍କ ସୁବିଧା ଅସୁବିଧା ପ୍ରତି ସେ ଦୃଷ୍ଟି ରଖୁଥିଲେ। ତାଙ୍କ ଭିଣୋଇଙ୍କ ପ୍ରତି ତାଙ୍କ ସହୋଦର ନୀଳକଣ୍ଠ ବୀତଶ୍ରଦ୍ଧ ହୋଇ ଭିଣୋଇଙ୍କୁ ଦୁର୍ବଳମନା ବୋଲି ଥରେ ପତ୍ର ଲେଖିଥିବା ହେତୁ ବୈକୁଣ୍ଠନାଥ, ନୀଳକଣ୍ଠଙ୍କୁ ଲେଖିଥିଲେ -

"I always take our brother-in-law as a straight forward, honest amd strong minded youth."

"ମୁଁ ସର୍ବଦା ଆମ୍ଭର ଭିଣୋଇଙ୍କୁ ସରଳ, ସାଧୁ ଓ ଦୃଢ଼ମନା ବ୍ୟକ୍ତି ବୋଲି ବିବେଚନା କରେଁ।"

ଭିଣୋଇଙ୍କୁ ଅଧୟନ ପାଇଁ ତାଙ୍କ ପିତା ଋଣ ଦେଇଥିଲେ। ଋଣ ପରିଶୋଧ ପାଇଁ ଭିଣୋଇ ଚିନ୍ତିତ ଥିବା ଜାଣି ବୈକୁଣ୍ଠନାଥ ଭିଣୋଇଙ୍କୁ ଲେଖିଥିଲେ - "ତୁମ୍ଭଙ୍କୁ

ଋଣ ଟଙ୍କା ଅସୁଲି ପାଇଁ କହିବା ଅର୍ଥ ଆମ୍ଭର ଭଗ୍ନୀର ପ୍ରିୟ ପତି ଓ ପୁତ୍ରକନ୍ୟାଙ୍କ ହିତ ପ୍ରତି ଚକ୍ଷୁ ମୁଦ୍ରିତ କରିବା ଭଳି ହେବ।" ଏଥିରୁ ବୈକୁଣ୍ଠନାଥଙ୍କ ସ୍ୱଜନ ପ୍ରୀତି ଓ ସ୍ୱଜନ ପ୍ରତି ସହାନୁଭୂତିଶୀଳତା ପ୍ରକାଶିତ ହୁଏ।

ବୈକୁଣ୍ଠନାଥ ଯେବେ ବିଦେଶରୁ ଗୃହକୁ ଆସୁଥିଲେ ଜନକ ଜନନୀ ଓ ଗୁରୁଜନଙ୍କ ଚରଣ ଧୂଳି ନେଇ ନିଜ ମୁଣ୍ଡରେ ବୋଳି ହେଉଥିଲେ। ତାଙ୍କ ମାତୃ ପିତୃ ଭକ୍ତି ଜଗତରେ ଅତୁଳନୀୟ। ଏହାର ଏକ ଉଦାହରଣ ନିମ୍ନରେ ପ୍ରଦତ୍ତ ହେଲା - ବୈକୁଣ୍ଠନାଥ ନିଜ ସହୋଦରଙ୍କୁ ୧୮୯୭ ଏପ୍ରିଲ ୬ ତାରିଖରେ ନିମ୍ନ ଅଭିମତ ସହ ପତ୍ର ଲେଖିଥିଲେ -

"If you want anything for you from Calcutta, please request our father to order me for those things and if your wife wants any, try to make her express it before our mother and that will soon reach her."

"କଲକତାରୁ ଯଦି ତୁମ୍ଭ ସକାଶେ କୌଣସି ଦ୍ରବ୍ୟ ନେବା ଆବଶ୍ୟକ ମନେ କର ତେବେ ପିତାଙ୍କୁ ଅନୁରୋଧ କର ଯେପରି ସେ ସମସ୍ତ ଦ୍ରବ୍ୟ ନେବା ନିମନ୍ତେ ପିତା ମୋତେ ଆଦେଶ ଦେବେ ଏବଂ ତୁମ୍ଭର ପତ୍ନୀ ଯଦି କୌଣସି ଦ୍ରବ୍ୟ ଋହୁଁଛନ୍ତି ତେବେ ଆମ୍ଭମାନଙ୍କ ମାତାଙ୍କ ପାଖରେ ଯେପରି ସେ ନିଜ ଅଭିଳାଷ ପ୍ରକାଶ କରିବେ ସେଥିପାଇଁ ତୁମ୍ଭେ ଚେଷ୍ଟା କରିବ; ଫଳରେ ଆବଶ୍ୟକ ବସ୍ତୁ ଚଞ୍ଚଳ ତାଙ୍କଠାରେ ପହଞ୍ଚିବ।"

ବୈକୁଣ୍ଠ ଏହି ଆଦର୍ଶରେ ନିଜ ଭ୍ରାତା ଓ ଭଗ୍ନୀଗଣଙ୍କୁ ଗଠନ କରିବା ନିମନ୍ତେ ସଚେଷ୍ଟ ଥିଲେ। ତାଙ୍କର ସହୋଦର ନୀଳକଣ୍ଠ ଏଫ୍.ଏ. ଅଧ୍ୟୟନ କରୁଥିବା ସମୟରେ ଭିଶୋଇ ଚନ୍ଦ୍ରଶେଖର ବେହେରାଙ୍କ ପରିବାର ସହିତ ରହୁଥିଲେ। ଗୃହ ନିକଟରେ ପ୍ଲେଗ ରୋଗର ପ୍ରାଦୁର୍ଭାବ ଦେଖା ଯିବାରୁ ଭିଶୋଇ ସମ୍ବଲପୁରକୁ ଋଲିଯିବେ ବୋଲି ମନସ୍ଥ କରିଥିବା ଶୁଣି ନିଜେ କି ବ୍ୟବସ୍ଥା କରିବେ ବୋଲି ନୀଳକଣ୍ଠ ବୈକୁଣ୍ଠନାଥଙ୍କୁ ଲେଖିଥିବାରୁ ତହିଁର ଉତ୍ତର ବୈକୁଣ୍ଠନାଥ ସନ୍ ୧୮୯୯ ସେପ୍ଟେମ୍ବର ୧୦ ତାରିଖରେ ନିମ୍ନମତେ ଦେଇଥିଲେ -

"If he goes all at once, the best course for you will be to join the Hislop Hostel. But it is better to get the counsel of our father to this, If time allows you to do so."

"ଯେବେ ସେ (ଭିଣୋଇ) ସହସା ଚାଲିଯିବେ ତୁମେ ହିସ୍ଲପ ଛାତ୍ରାବାସରେ ରହିବା ସର୍ବାପେକ୍ଷା ଭଲ ବ୍ୟବସ୍ଥା। କିନ୍ତୁ ଯେବେ ତୁମ୍ଭଙ୍କୁ ସମୟ ମିଳିବ ତେବେ ଆମ୍ଭମାନଙ୍କ ପିତୃଦେବଙ୍କ ଏହି ପ୍ରସଙ୍ଗରେ ପରାମର୍ଶ ଗ୍ରହଣ କରିବା ଶ୍ରେୟସ୍କର।"

ସମ୍ବଲପୁରରେ ଚାକିରୀ କରିବା ସମୟରେ ସେ ମାସିକ ବେତନ ଆଣି ନିଜ ମାତାଙ୍କ ହସ୍ତରେ ସମର୍ପଣ କରୁଥିଲେ ଏବଂ ନିଜ ହାତ ଖର୍ଚ୍ଚ ନିମନ୍ତେ ଯେତେବେଳେ ଯେତିକି ପ୍ରୟୋଜନ ହେଉଥିଲା ମାତାଙ୍କ ପାଖରୁ ଆଣୁଥିଲେ।

ନାଗପୁରରେ ଅତିରିକ୍ତ ସହକାରୀ କମିଶନର କାର୍ଯ୍ୟ କରିବା ସମୟରେ ନିଜ ମାସିକ ନିୟମିତ ବ୍ୟୟର ଫର୍ଦ୍ଦ ଦିଆରି କରି ତଦନୁଯାୟୀ ବ୍ୟୟ କରୁଥିଲେ। ଶୁଣାଯାଏ, ଥରେ ଫର୍ଦ୍ଦ ଅତିରିକ୍ତ ସାମାନ୍ୟ ତିନି ଟଙ୍କା ବ୍ୟୟ କରିବା ନିମନ୍ତେ ମାତୃ ଆଦେଶକୁ ଅପେକ୍ଷା କରିଥିଲେ। ମାତ୍ରାଜ୍ଞା ବିନା ସ୍ୱେଚ୍ଛାରେ ବ୍ୟୟ କରିବା ମାତୃ ସମ୍ମାନରେ ଆଞ୍ଚ ଆଣିବ ବୋଲି ବୈକୁଣ୍ଠନାଥ ବିବେଚନା କରିଥିଲେ।

ବୈକୁଣ୍ଠନାଥଙ୍କ ନିଜର ପୁତ୍ର ବା କନ୍ୟା ନ ଥିଲେ। ସେ ଆପଣାର ସହୋଦର ଓ ସହୋଦରାଙ୍କ ପ୍ରତି ବାତ୍ସଲ୍ୟ ପ୍ରକାଶ କରି ଆନନ୍ଦିତ ହେଉଥିଲେ। ତାଙ୍କ ଭଗ୍ନୀ ଶ୍ରୀମତୀଙ୍କୁ ପାଠ ନ ପଢ଼ାଇବା ବିଷୟ ନେଇ ଦୁଃଖ ପ୍ରକାଶ କରି ନିଜ ପତ୍ନୀଙ୍କ ପାଖକୁ ପତ୍ର ଲେଖିଥିବା କଥା ଇତି ପୂର୍ବେ ଉଲ୍ଲେଖ କରାଯାଇଅଛି।

ତାଙ୍କ ସହୋଦର ନୀଳକଣ୍ଠ ବି.ଏ. ପଢ଼ିବା ବେଳେ ନାନା ଭାବନାରେ ଘାଣ୍ଟି ହେଉଥିଲେ। କେତେବେଳେ ଧର୍ମପ୍ରଚାରକ, କେତେବେଳେ ଅବା ସଂସ୍କୃତ ପଣ୍ଡିତ କେତେବେଳେ ଅବା ଦେବ ଭକ୍ତ ହେବା ଇଚ୍ଛା ବଳାଇ ଅଧ୍ୟୟନରେ ଶିଥିଳତା ପ୍ରକାଶ କଲେ, ବୈକୁଣ୍ଠନାଥ ଦୁଃଖ ପ୍ରକାଶ କରି ଲେଖିଲେ - "ଯେବେ ଅଧ୍ୟୟନରେ ଅମନଯୋଗୀ ହୁଅ ପିତା ତୁମ୍ଭଙ୍କୁ ସମ୍ବଲପୁରକୁ ଫେରେଇ ଆଣିବେ।" ଏହି ଲେଖା ନୀଳକଣ୍ଠଙ୍କ ଭାବାନ୍ତର ଉଦ୍ରେକ କଲା ଏବଂ କଠିଣ ପରିଶ୍ରମ କରି ସେ ଭଲ ଭାବରେ ବି.ଏ. ପାସ୍ କଲେ।

ଭୃତ୍ୟମାନଙ୍କ ପ୍ରତି ବୈକୁଣ୍ଠନାଥ ଉଦାର ଥିଲେ। ସେମାନଙ୍କ ସକଳ ତ୍ରୁଟି ସେ ମାର୍ଜନା କରୁଥିଲେ, କିନ୍ତୁ ସେମାନଙ୍କ ଅସତ୍ୟ କଥନ ସେ କେବେ ସହ୍ୟ କରୁ ନଥିଲେ।

ଅତିଥି ଅଭ୍ୟାଗତ ମାନଙ୍କୁ ପରମ ଭକ୍ତି ସହିତ ସେ ସମ୍ବର୍ଦ୍ଧନା କରୁଥିଲେ। ସେମାନେ ଭୋଜନ ସମାପ୍ତ କରିବା ପର୍ଯ୍ୟନ୍ତ ନିକଟରେ ବସି ସେମାନଙ୍କ ଆବଶ୍ୟକ

ଦ୍ରବ୍ୟ ଆଣିବାକୁ ସେ ବରାଦ କରୁଥିଲେ। ଭୋଜ୍ୟ ଦ୍ରବ୍ୟ ପ୍ରସ୍ତୁତିରେ କୌଣସି ବିଶେଷତ୍ୱ ନଥିଲା। ସାଦା ଭାତ, ମୁଗ ଡ଼ାଲି, ସାଦା ତରକାରୀ ଓ ଶାଗ ଖରଡ଼ା ଯେଉଁ ଦ୍ରବ୍ୟମାନ ସେ ନିତ୍ୟ ଭୋଜନ କରୁଥିଲେ, ସେ ସମସ୍ତ ଦ୍ରବ୍ୟ ଅତିଥିଙ୍କୁ ସମର୍ପଣ କରୁଥିଲେ। ଏଥିରୁ ତାଙ୍କର ନିରାଡ଼ମ୍ବରତା ପ୍ରତିପନ୍ନ ହୁଏ।

ଦେଶର ସାମାଜିକ ଅବସ୍ଥିତି ଓ ପାରିପାର୍ଶ୍ୱିକ ଅବସ୍ଥା ଲୋକଙ୍କ ପ୍ରାଣରେ ନବୀନ ପ୍ରେରଣା ଆନୟନ କରେ। ତାକୁ ଘେନି କର୍ମକ୍ଷେତ୍ର ଆଡ଼କୁ ଦୃଷ୍ଟିପାତ କରି ଯେବେ କୌଣସି ସଂଶୋଧନ ବା ନୂତନକ୍ଷେତ୍ର ପ୍ରସ୍ତୁତିର ଆବଶ୍ୟକତା ଉପଲବ୍ଧି ହୁଏ ସେତେବେଳେ ପ୍ରାଣରେ ଏକ ଅଦ୍ଭୁତ ସ୍ପନ୍ଦନ ଦେଖାଯାଏ। ଲୋକ ଏକ ପ୍ରାତ୍ୟହିକ କର୍ମ ନିର୍ଘଣ୍ଟ ପ୍ରସ୍ତୁତ କରି ତଦନୁଯାୟୀ କାର୍ଯ୍ୟ ସମ୍ପାଦନ କରିବା ନିମିତ୍ତ ବଦ୍ଧ ପରିକର ହୁଏ। ବୈକୁଣ୍ଠନାଥ ଏହିପରି ପ୍ରେରଣାରେ ଅନୁପ୍ରାଣିତ ହୋଇ ପ୍ରାତ୍ୟହିକ କର୍ମ ନିଘଣ୍ଟ ପ୍ରସ୍ତୁତ କରିଥିଲେ। ପ୍ରତ୍ୟହ ବ୍ରହ୍ମମୁହୂର୍ତ୍ତରୁ ଗାତ୍ରୋତ୍‌ଥାନ କରି ନିତ୍ୟ କର୍ମ ଶେଷ ପରେ ବ୍ୟାୟାମ କରିବାକୁ ପ୍ରସ୍ତୁତ ହେଉଥିଲେ। ତାଙ୍କୁ ଅନୁକରଣ ଓ ଅନୁସରଣ କରୁଥିଲେ ପ୍ରତିବେଶୀ ଯୁବକ ବୃନ୍ଦ। ନିର୍ଦ୍ଧାରିତ ସମୟରେ ପ୍ରତିଦିନ ତଦାନୀନ୍ତନ ମରିସ ହାଇସ୍କୁଲ (ବର୍ତ୍ତମାନ ଲେଡ଼ି ଲୁଇସ୍ ଉଚ୍ଚ ଇଂରାଜୀ ବାଳିକା ବିଦ୍ୟାଳୟ) ପ୍ରାଙ୍ଗଣରେ ସମସ୍ତେ ଏକତ୍ରିତ ହେଉଥିଲେ। ଦଣ୍ଡ, ବୈଠକ, ମୁଦ୍‌ଗର ଚାଳନା ଓ ଭାର ଉତ୍ତୋଳନ ଆଦି ଶରୀର ପୁଷ୍ଟିକର ବ୍ୟାୟାମରେ ସମସ୍ତେ ଯୋଗଦାନ କରୁଥିଲେ। ତତ୍ପରେ ବୈକୁଣ୍ଠନାଥ ଯୁବକ ମାନଙ୍କ ସହିତ ଅନାବୃତ ବକ୍ଷରେ ନ୍ୟୁନ ପକ୍ଷରେ ଏକ ମାଇଲ ପଥ ଧୀର ପଦକ୍ଷେପରେ ଶୃଙ୍ଖଳାବଦ୍ଧ ଭାବେ ପରିଭ୍ରମଣ କରି ପ୍ରତ୍ୟାବର୍ତ୍ତନ ପରେ ସ୍ନାନାର୍ଥେ ଗମନ କରୁଥିଲେ। ବୈକୁଣ୍ଠନାଥ ସ୍ନାନ ସମୟରେ ନିୟମିତ ଭାବରେ ମନ୍ତ୍ରୋଚ୍ଚାରଣ କରୁଥିଲେ। ଗୃହକୁ ପ୍ରତ୍ୟାବର୍ତ୍ତନ କରି ଆଦ୍ର ବସ୍ତ୍ର ପରିହାର କରି ଲଲାଟ, ବାହୁ ଓ ବକ୍ଷରେ ଚନ୍ଦନ ବୋଳିବାକୁ କୌଣସି ଦିନ ଅବହେଳା କରୁ ନଥିଲେ। ତାଙ୍କର ସାତ୍ତ୍ୱିକ ଆହାର ଥିଲା - ସାଦା ଭାତ, ମୁଗ ଡ଼ାଲି, ସାଦା ତରକାରୀ ଓ ଶାଗ ଖରଡ଼ା ବା ଶାଗ ଭଜା; ଆମିଷ ଭକ୍ଷଣରେ ତାଙ୍କ ସ୍ପୃହା ନଥିଲା। ଏ କାର୍ଯ୍ୟ ନିର୍ଘଣ୍ଟରେ କେତେ ଦିନ ପରେ ଦୁଗ୍ଧବତୀ ଗୋରୁର ଯୋଗାଡ଼ ହେବା ପରେ ସ୍ନାନର ପୂର୍ବରୁ ଗୋ-ଦୋହନ କାର୍ଯ୍ୟ ସଂଯୁକ୍ତ କରାଗଲା ଓ ଆହାର ପରେ ଉଭୟ ବେଳା ସାମାନ୍ୟ ଦୁଗ୍ଧ ପାନ କରିବା ବ୍ୟବସ୍ଥା କରାଗଲା।

ଯେଉଁଦିନ ବ୍ୟାୟାମରେ ସମସ୍ତେ ଉପସ୍ଥିତ ହେଉଥିଲେ ସେଦିନ ସେ ତୃପ୍ତିଲାଭ

କରୁଥିଲେ । ଯେବେ ମନ୍ଦ ପାଗରୁ ଅବା ଅନ୍ୟ କାରଣରୁ ଉପସ୍ଥିତି ସଂଖ୍ୟା ଊଣା ହେଉଥିଲା ସେ କ୍ଷୁର୍ଣ୍ଣ ହେଉଥିଲେ । ଏହି ସଂଘ ସମ୍ପର୍କରେ ସୁଦୂର କଲିକତାରେ ରହି ମଧ୍ୟ ବରାବର ସମ୍ବାଦ ରଖୁଥିଲେ । ସେ ନିଜ ଭ୍ରାତା ନୀଳକଣ୍ଠଙ୍କୁ ୧୮୯୭ ସାଲ ଅପ୍ରେଲ ୬ ତାରିଖରେ ନିମ୍ନମତେ ଲେଖିଥିଲେ -

"I am glad to learn that the athletic party I formed is still existing through in a morbid state + + + + + + + However that should never discourage us. Let our aims be to be heroes and to form heroes. If it is a great thing to form heroes."

"ମୁଁ ସଙ୍ଗଠନ କରିଥିବା ବ୍ୟାୟାମ ସଂଘ ରୁଗ୍‌ଣାବସ୍ଥାରେ ଥିଲେ ହେଁ ବଞ୍ଚି ରହିଥିବା ଜାଣି ଆନନ୍ଦିତ ହେଲି + + + + + + + + ଯାହା ହେଉ ତାହା ଆମ୍ଭଙ୍କୁ ନିରୁତ୍ସାହିତ କରି ନପାରେ । ଆମ୍ଭ ମାନଙ୍କର ଧେୟ ହେଉ ନିଜେ ବୀର ହେବା ଓ ବୀର ଗଠନ କରିବା । ବୀର ହେବା ଏକ ବଡ଼ କଥା; ବୀର ଗଠନ କରିବା ଅଧିକତର ବଡ଼ କଥା ।"

ନାଗପୁର ଜିଲ୍ଲାରେ ବୈକୁଣ୍ଠନାଥ କାର୍ଯ୍ୟ କରୁଥିବା ସମୟରେ ୧୯୦୨ ଖ୍ରୀଷ୍ଟାବ୍ଦର ନଭେମ୍ବର ୧୯ ତାରିଖରେ ନିଜ ସହୋଦର ପ୍ରସନ୍ନ କୁମାରଙ୍କୁ ପତ୍ରରେ ପଚାରିଥିଲେ -

"What physical exercise do you take? Never be irregular in this matter."

ଦିନ ଦଶ ଘଟିକାରେ ଭୋଜନ ସମାପ୍ତ କରି ସରକାରୀ କାର୍ଯ୍ୟ ନିର୍ବାହ ନିମିତ୍ତ ଅଦାଲତରେ ବୈକୁଣ୍ଠନାଥ ଉପସ୍ଥିତ ହେଉଥିଲେ । କର୍ମ ସମ୍ପାଦନ ପରେ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଗୃହରେ ପ୍ରସ୍ତୁତ ଲଘୁ ଆହାର ଭୋଜନ କରୁଥିଲେ । ତଦନନ୍ତର ସମୟ ସମୟରେ 'ବୈଦେହୀ' ନାମ୍ନୀ ପୂଜାରୀ ବଂଶୀୟା ଜନୈକା ଦୃଷ୍ଟି ଶକ୍ତି ହୀନା ବୃଦ୍ଧାଙ୍କ ନିକଟକୁ ଯାଇ ଅତୀତ କଥା କିଛି ସମୟ ପାଇଁ ଆଲୋଚନା କରି ମାନସିକ କ୍ଳାନ୍ତି ଲାଘବ କରୁଥିଲେ । କେବେ ନିଜ ବାଲ୍ୟକାଳର ଅଭିଭାବକ ମଦନ ମୋହନ ପୂଜାରୀଙ୍କ ସହିତ କୃଷି ସମ୍ବନ୍ଧରେ ଆଲୋଚନା କରୁଥିଲେ ।. କେବେ ଅବା ବନ୍ଧୁମେଳରେ ଲୋକଙ୍କ ସମୂହ ଉନ୍ନତି ସାଧନ ଅଥବା ଅଭାବ ଓ ଅସୁବିଧା ପ୍ରସଙ୍ଗ ନେଇ ଆଲୋଚନା କରୁଥିଲେ । ଏ

ପ୍ରସଙ୍ଗରେ ସମ୍ବଲପୁରର ଫ୍ରେଜର ପ୍ରେସରୁ ୧୯୩୬ ରେ ପ୍ରକାଶିତ 'ଜାଗରଣ' ସାପ୍ତାହିକ ଓଡ଼ିଆ ପତ୍ରିକାରେ ସମ୍ବଲପୁରର ଦେଶ ମିଶ୍ରଣ କମିଟିର ସମ୍ପାଦକ ୰ ଭଗବାନ ମିଶ୍ର ସନ୍ ୧୯୩୬ ଅଗଷ୍ଟ ୧୨ ତାରିଖରେ ନିମ୍ନମତେ ବିବୃତି ପ୍ରକାଶ କରିଥିଲେ -

"ଆଜିକି ପ୍ରାୟ ୩୬ ବର୍ଷ କାଳ ହେଲା ସମ୍ବଲପୁରର ଜାଗରଣ। ୧୯୦୦ ସାଲରେ ଯେତେବେଳେ ମ୍ କଟକରେ ଅଧ୍ୟୟନ କରୁଥିଲି ଗ୍ରୀଷ୍ମାବକାଶରେ ସମ୍ବଲପୁର ଆସିଥିବା ସମୟରେ 'ଭିକ୍ଟୋରିଆ ଘାଟ'ରେ ସ୍ୱର୍ଗତ ବୈକୁଣ୍ଠନାଥ ପୂଜାରୀ, ଶ୍ରୀପତି ମିଶ୍ର ଓ ଚନ୍ଦ୍ରଶେଖର ବେହେରାଙ୍କ ସହିତ କଥାବର୍ତ୍ତା ହେଉଥିବା ସମୟରେ ସ୍ୱର୍ଗତ ବୈକୁଣ୍ଠନାଥ ପୂଜାରୀ କହି ବସିଲେ, "ହିନ୍ଦୀରେ ସମନ ଜାରି ହେଉଥିବାରୁ ତ ଜଣେ ଲୋକ ତାରିଖ ଠିକ୍ ଜାଣି ପାରିଲା ନାହିଁ। ମତେ ମୋକଦ୍ଦମାଟି ବାଧ ହୋଇ ଖାରଜ କରିବାକୁ ପଡ଼ିଲା। ପୁଣି ଉକ୍ତ ବ୍ୟକ୍ତି ମୋ ପାଖରେ ତାରିଖ ଜଣା ନଥିବାରୁ ହାଜର ହୋଇ ପାରିନାହିଁ ବୋଲି ଆପତ୍ତି କଲା।"

ସମ୍ବଲପୁରର ଦୁର୍ଦ୍ଦଶା ଅନୁଭବ କରି ପଣ୍ଡିତ ଶ୍ରୀପତି ମିଶ୍ର ବିଚଳିତ ହୋଇ ପଡ଼ିଲେ ଓ କହିଲେ, "ସମ୍ବଲପୁରରେ ଓଡ଼ିଆ କଚେରୀ ଭାଷା ନହେଲେ ସମ୍ବଲପୁରର ଲୋକେ ସର୍ବସ୍ୱାନ୍ତ ହେବେ" ଏହା କହି ସେ କାର୍ଯ୍ୟରେ ଲାଗି ପଡ଼ିଲେ; ତାଙ୍କ ସଙ୍ଗକୁ ପଣ୍ଡିତ ଚନ୍ଦ୍ରଶେଖର ବେହେରା ମଧ୍ୟ ଲାଗିପଡ଼ିଲେ।

ମଧ୍ୟପ୍ରଦେଶର ପୂର୍ବତନ ଚିଫ୍ କମିଶନର ଓ ବଙ୍ଗ ପ୍ରଦେଶର ଛୋଟ ଲାଟ ସାର୍ ଏଣ୍ଡ୍ରୁ ଫ୍ରେଜରଙ୍କ ଲିଖିତ 'ରାଜା ଓ ପ୍ରଜା' ପୁସ୍ତକର 'ବଙ୍ଗ ବିଭାଗ' ଶିରୋନାମା ୨୩ଶ ଅଧ୍ୟାୟରେ ହିନ୍ଦୀରେ ସମନ ଦିଆ ଯାଉଥିବାରୁ ଜନ୍ମୁଥିବା ଅସୁବିଧା କଥା ନିମ୍ନମତେ ଲିପିବଦ୍ଧ ହୋଇଛି -

"I found cases of men who had been summoned to court forty or fifty miles off. They could not themselves read the summons nor could they find anyone in their village to read it. They are illiterate officer that brought it that it necessitated their appearance at the Court. Fearful of the consequences of absenting themselves, they went to the Court, and there enquired what it was that was wanted. Then they had to apply for

an adjournment to enable them to bring up their papers or their evidence and then they had to take their weary journey back again - perhaps fifty miles on foot or in a country cart to obtain these."

କେବେ କେବେ ଦୁଷ୍ଟ ପ୍ରକୃତିର ବାଳକ ବାଳିକାଙ୍କ ଦୁଷ୍ଟାମିର ମାତ୍ରା କେଉଁ ପରିମାଣରେ ହ୍ରାସ ହେଲାଣି ଏବଂ ତାଙ୍କ ଦଣ୍ଡବିଧାନ ନୀତି କେତେ ଦୂର କାର୍ଯ୍ୟକାରୀ ହୋଇଛି ସେ ସବୁର ତନ୍ନତନ୍ନ ଅନୁସନ୍ଧାନ କରୁଥିଲେ। ବାଳିକାଗଣଙ୍କ ପ୍ରତି ଶାସ୍ତିର ବ୍ୟବସ୍ଥା ଥିଲା, ସେମାନେ ଅନ୍ୟର ବିନା ସାହାଯ୍ୟରେ ରୋଷେଇ ବା ସିଲେଇ କାର୍ଯ୍ୟ କରିବେ। ଏ କ୍ଷେତ୍ରରେ ବାସ୍ତବରେ ସେମାନେ କେତେଦୂର ଆତ୍ମନିର୍ଭରଶୀଳା ହୋଇ ପାରିଅଛନ୍ତି ଏହା ମଧ୍ୟ ସେ ଲକ୍ଷ୍ୟ କରୁଥିଲେ। ତତ୍ପରେ ବାଳକମାନଙ୍କ ପ୍ରତି ହସ୍ତାକ୍ଷର ଲେଖିବା ଓ ଗାଣିତିକ ପ୍ରଶ୍ନ ସମାଧାନ କରିବା ଆଦି ଦଣ୍ଡ ବିଧାନ ଦ୍ୱାରା ସେମାନଙ୍କ ଦୁଷ୍ଟାମି ହ୍ରାସ ସଙ୍ଗେ ସଙ୍ଗେ ଲିଖନ ଓ ଗଣିତ ସମାଧାନରେ ପୂର୍ବାପେକ୍ଷା ଉନ୍ନତି ଲାଭ କରିଅଛନ୍ତି ଅବା ନାହିଁ ତାହା ଦେଖିବାରେ ମଧ୍ୟ ନିଜ ଅବସର ସମୟ ବୈକୁଣ୍ଠ ନାଥ ବିନିଯୋଗ କରୁଥିଲେ। ସେ କେବେ ହେଲେ ପଶା, ଗଞ୍ଜାପା ଖେଳ ଅବା କୌଣସି ବିଳାସରେ ମଗ୍ନ ହୋଇ ସମୟର ଅପଚୟ କରୁ ନଥିଲେ।

ପ୍ରତ୍ୟହ ଶୟନ ପୂର୍ବରୁ ନିଜ ସମ୍ପାଦିତ କାର୍ଯ୍ୟାବଳୀ ବୈକୁଣ୍ଠନାଥ ଲିପିବଦ୍ଧ କରୁଥିଲେ। ସେ ଦ୍ରୁତଗାମୀ ସମୟର ପ୍ରତ୍ୟେକ ମୁହୂର୍ତ୍ତର ସଦ୍‌ବ୍ୟବହାର କରି ପାରିଥିବା ଦିନ ପ୍ରଫୁଲ୍ଲ ମନରେ ଗାଢ଼ ନିଦ୍ରାଭିଭୂତ ହେଉଥିଲେ। ଯଦି ଦୈବାତ୍ କୌଣସି କାରଣରୁ କୌଣସି ଦିନ୍ନର କେତେ ମୁହୂର୍ତ୍ତ ସେ ଅପଚୟ କରିଅଛନ୍ତି ତେବେ ସେ ଅନୁତପ୍ତ ହେଉଥିଲେ ଏବଂ ଭବିଷ୍ୟତରେ ସେପରି ବିଘ୍ନ ଯେଭଳି ନ ହେବ ଓ ସମୟର ଅପଚୟ ନହେବ ସେଥିପ୍ରତି ସତର୍କ ରହିବାକୁ ପଣ କରୁଥିଲେ।

ଶ୍ୟାମ ସୁନ୍ଦର ପୂଜାରୀ ହେଉଛନ୍ତି ବୈକୁଣ୍ଠନାଥଙ୍କ ରକ୍ତ ସମ୍ପର୍କୀୟ ଭାଇ। ବୈକୁଣ୍ଠଙ୍କ ପ୍ରେରଣା ଓ ସାହାଯ୍ୟରେ ଶ୍ୟାମ ସୁନ୍ଦର ଛଅ ବର୍ଷ କାଳ ବମ୍ବେରେ ରହି ସୂକ୍ଷ୍ମ ଚିତ୍ରାଙ୍କନ ଶିକ୍ଷା କରିଥିଲେ। ତାଙ୍କ ଅଙ୍କିତ ଲୋକଙ୍କ ଛବି ଜୀବନ୍ତ ପରି ଦେଖାଯାଉଥାଏ। ବହୁ ବୃହତ୍ ଆକାରର ତୈଳଚିତ୍ର ସେ ଅଙ୍କନ କରିବା ପାଇଁ ଓଡ଼ିଶାର ପୂର୍ବତନ କରଦ ରାଜାମାନଙ୍କ ଦ୍ୱାରା ନିମନ୍ତ୍ରିତ ହୋଇ ଯାଉଥିଲେ ଓ ଯଥେଷ୍ଟ ଅର୍ଥ ଉପାର୍ଜନ କରୁଥିଲେ।

ବୈକୁଣ୍ଠନାଥଙ୍କ ପ୍ରେରଣା ଓ ଉତ୍ସାହରେ ତାଙ୍କର କକା-ପୁଅ ଭାଇ ନଟବର ଆଲୋକ ଚିତ୍ରାଙ୍କନ ବିଦ୍ୟାରେ ବିଶେଷ ଖ୍ୟାତି ଲଭିଥିଲେ। ରାଜା ମହାରାଜାଙ୍କ ବିବାହ ବ୍ରତ ଓ ଅଭିଷେକ ସମୟରେ ସେ ପ୍ରାୟ ନିମନ୍ତ୍ରିତ ହେଉଥିଲେ। ସରକାରୀ କାର୍ଯ୍ୟରେ ମଧ୍ୟ ଫଟୋ ଉଠାଉଥିଲେ।

ମୁକୁନ୍ଦ ପ୍ରସାଦ ପୂଜାରୀ ବୋଲି ତାଙ୍କ ରକ୍ତ ସମ୍ପର୍କୀୟ ଜଣେ ଯୁବକ ପରି ଶାରୀରିକ ଓ ମାନସିକ ଉତ୍କର୍ଷତା ଥିବା ବ୍ୟକ୍ତି ସ୍ୱଳ୍ପ ଦେଖାଯାଆନ୍ତି ବୈକୁଣ୍ଠ କଲେଜ ପାଠ ସମାପ୍ତି ପରେ ବିଦେଶକୁ ପଠାଇ ମୁକୁନ୍ଦଙ୍କୁ ନିଜ ଶକ୍ତି ଖଟାଇ ଜଣେ ଆଦର୍ଶ ବ୍ୟକ୍ତି ରୂପେ ଗଢ଼ିବା ଆଶା କରିଥିଲେ। ଯୁବା କାଳରୁ ମୁକୁନ୍ଦଙ୍କ ପ୍ରବଳ ଉଦ୍ଭାବନ ଶକ୍ତି ଥିଲା ସେ ଗୋଟିଏ ଷ୍ଟିମ୍ ଇଞ୍ଜିନ ଦ୍ୱାରା ଏକ ଜଳିବୋଟ ନିର୍ମାଣ କରିଥିଲେ। କିନ୍ତୁ କ୍ରୁର କାଳ ଏଥିରେ ବାଦ କଲା।

ବୈକୁଣ୍ଠଙ୍କ ମନରେ ଦୁଃଖ ଜାତ ହେଲା ସହସିଆପଡ଼ା ନିବାସୀ ବ୍ରଜମୋହନ ବଢ଼ାଇ କୂପ ମଣ୍ଡୁକ ପରି ସମ୍ବଲପୁରରେ ପଡ଼ି ରହିବା ପାଇଁ ଇଚ୍ଛା ପ୍ରକାଶ କରିବା ଯୋଗୁଁ। ବ୍ରଜମୋହନ ଯେ କେବଳ ସୂତ୍ରଧର ଥିଲେ ତାହା ନୁହେଁ, ତାଙ୍କଠାରେ କମାର, ସ୍ୱର୍ଣ୍ଣକାର ଓ ଖୋଦନକାରର ଗୁଣ ମଧ୍ୟ ନିହିତ ଥିଲା ଏଣୁ ତାଙ୍କ ସକାଶେ ମାସିକ ବୃତ୍ତିର ବ୍ୟବସ୍ଥା କରି ବୋମ୍ବାଇ ପଠାଇବା ନିମନ୍ତେ ବୈକୁଣ୍ଠନାଥ ଇଚ୍ଛା ପ୍ରକାଶ କରିଥିଲେ। ସେ ବୋମ୍ବାଇରୁ ଶିକ୍ଷା ପାଇ ଫେରି ଆସି ନିଜ ଜାତି ଭାଇଙ୍କ ଭିତରୁ କେତେ ଜଣଙ୍କୁ ହୁଏତ ତାଙ୍କ ପରି ଗଠନ କରି ପାରିଥାଆନ୍ତେ। ବୈକୁଣ୍ଠନାଥ ଜିଲା କାଉନସିଲରୁ ସମ୍ପାଦକ ରୂପେ ରମ୍ଭେଲା (ଏବେ ହୀରାକୁଦ ବନ୍ଧ ହେତୁ ଜଳମଗ୍ନ) ଗ୍ରାମରେ ଛାତ୍ରାବାସ ନିର୍ମାଣ କରାଇବା ଦିନ ପରମ ସନ୍ତୋଷ ଲାଭ କରିଥିଲେ। ଶିଳ୍ପ ଓ କଳାର ଅବ୍ୟାହତ ପାଇଁ ନୁହେଁ; ସେସବୁ କିପରି ଉନ୍ନତି ହେବ ସେଥିପାଇଁ ସେ ସଚେଷ୍ଟ ଥିଲେ। ବ୍ୟବସାୟ ବୃଦ୍ଧି ପାଇଁ ସେ କାରଖାନା ବସାଇବାକୁ ମଧ୍ୟ ଇଚ୍ଛା କରିଥିଲେ।

ଆଶ୍ୱିନ ଶୁକ୍ଳପକ୍ଷ ବିଜୟା ଦଶମୀ ଦିନ ବଙ୍ଗର ପ୍ରତ୍ୟେକ ଅଞ୍ଚଳରେ ବଙ୍ଗୀୟଗଣ ପୂର୍ବ ବିବାଦ ବୈରତା ଭୁଲି ପରସ୍ପରକୁ ସ୍ନେହାଲିଙ୍ଗନ କରିଥାଆନ୍ତି। ଏହି ପ୍ରଥାକୁ ସମ୍ବଲପୁରବାସୀଙ୍କ ମଧ୍ୟରେ ପ୍ରଚଳନ କରିବା ସ୍ଥିର କରି ବୈକୁଣ୍ଠନାଥ ବାନପ୍ରସ୍ଥ ଧରଣୀଧର ମିଶ୍ରଙ୍କ ଦ୍ୱିତୀୟ ପୁତ୍ର ଓ ନୀଳକଣ୍ଠଙ୍କ ସହପାଠୀ ମଦନ ମୋହନ ମିଶ୍ରଙ୍କ ସହିତ ପୂର୍ବ ପରି

ବାର୍ତ୍ତାଳାପ କରି ସଦ୍‌ଭାବ ସ୍ଥାପନ କରିବାକୁ କଲିକତା ସ୍ଥିତ ମେଛୁଆ ବଜାରରେ ରହୁଥିବା ମଦନ ମୋହନଙ୍କ ପାଖକୁ ବିଜୟା ଦଶମୀ ଦିନ ଅପ୍ରତ୍ୟାଶିତ ଭାବେ ପହଞ୍ଚି ତାଙ୍କୁ ଅଭିନନ୍ଦନ ଜଣାଇ ବିସ୍ମୟ ବିହ୍ୱଳ କରିଥିଲେ। ଏ ଘଟଣାରେ ମଦନ ମୋହନ ନିଜର ସଂକୀର୍ଣ୍ଣତା ଓ ଅବିନୟଭାବ ଏବଂ ବୈକୁଣ୍ଠନାଥଙ୍କ ଉଦାରତା ଓ ମାନବିକତାରେ କିପରି ଲଜ୍ଜିତ ହୋଇ କ୍ଷମା ପ୍ରାର୍ଥନା କରି ପୂର୍ବ ବ୍ୟବହାର ବିସ୍ମୃତ ହେବାକୁ ଅନୁରୋଧ କରିଥିଲେ ତାହା ବୈକୁଣ୍ଠନାଥଙ୍କ ପାଖକୁ ୧୮୯୭ ଖ୍ରୀଷ୍ଟାବ୍ଦ ନଭେମ୍ବର ୨୩ ତାରିଖରେ ସେ ଲେଖିଥିବା ଏକ ପତ୍ରର ନିମ୍ନୋଦ୍ଧୃତ କେତେକାଂଶରୁ ଜଣାପଡ଼ିବ।

Your departure occuring at a time of great haste I could not find time to give full expression to my feeling + + + Although we had not a word with each other since the beginning of the present session, yet your venerable self had the same tenderness of feeling as before it. + + + I had repeatedly wanted the hardihood to approach you in words. But at any rate, God has fulfilled my long cherished desire. + + + I have, after all, secured your companionship drives me to an ecstasy of delight and pours a bottle of nectar, as it were into my mouth; but I am no less mortified when I recollect that a superior came personally to me when I should have gone to him, it reflects nobleness, gentlemanliness on your part while meanness and churliness on mine + + + This much, and I conclude with these last words 'Forgive & forget' and in return shall be glad to receive a letter from you with six words, if not more, and they are " I forgive you and wish to forget."

୪ ବୈକୁଣ୍ଠନାଥଙ୍କ ସାହସ ଓ ଆତ୍ମ ପ୍ରତ୍ୟୟର ଏକ ଦୃଷ୍ଟାନ୍ତ -

କଥିତ ହୁଏ ଥରେ ବନ୍ଧୁ ମେଳରେ କଲିକତାରେ ବୁଲିବା ସମୟରେ ଜଣେ ଫଟୋଗ୍ରାଫର ବେଶଧାରୀ ଖଣ୍ଡର କଥାରେ ଭୁଲି ଫଟୋ ଉଠାଇବାକୁ ତାର ମାୟା ଷ୍ଟୁଡ଼ିଓକୁ ଗଲେ। ସେଠାରେ ଖଣ୍ଡ ତାର ସ୍ୱରୂପ ଦେଖାଇ ଦ୍ୱାର ବନ୍ଦ କଲା। ପରିସ୍ଥିତି ଜାଣି

ତାଙ୍କ ବନ୍ଧୁମାନେ ଭୀତ ହେଲେ। ଯେତେବେଳେ ଖଣ୍ଟର ସଙ୍ଗୀମାନେ ଲୁଣ୍ଠନ କରିବାକୁ ଚେଷ୍ଟା କଲେ, ବଜ୍ରଗମ୍ଭୀର ସ୍ୱରରେ ବୈକୁଣ୍ଠନାଥ କହିଲେ - 'ଦରୋଜା ଖୋଲୋ' 'ଦରୋଜା ଖୋଲୋ'। ଏହା ପରେ ନିଜର ଲଗୁଡ଼ ଉଠାଇ ଘୁରାଇବାକୁ ଲାଗିଲେ। ତାଙ୍କ ତରାଟି - ତାଙ୍କ ଲଗୁଡ଼ ବୁଲାଇବା ଦେଖି ଖଣ୍ଟର ସଙ୍ଗୀମାନେ ପ୍ରମାଦ ଗଣିଲେ - ଶେଷକୁ ଦରୋଜା ଖୋଲି ଖଣ୍ଟ କହିଲା - "ସତେ କଣ ଆମ୍ଭର ଅସଦ୍ ଉଦ୍ଦେଶ୍ୟ ଥିଲା, ତାହା ନୁହେଁ, ତୁମ୍ଭର ବେଶ ଦେଖି ତୁମ୍ଭର ସାହସ ପରୀକ୍ଷା କରୁଥିଲୁ।" ବୈକୁଣ୍ଠଙ୍କ ସଙ୍ଗୀଗଣ କହିଲେ ଆଜି ତୁମ୍ଭ ହେତୁ ବିପଦରୁ ରକ୍ଷା ପାଇଲୁଁ।

ପ୍ରତି ଶନିବାର ସନ୍ଧ୍ୟାରେ ତଦାନୀନ୍ତନ ମରିସ୍ (ଆଧୁନିକ ଲେଡ଼ି ଲୁଇସ୍) ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରାଙ୍ଗଣରେ ଯୁବକମାନଙ୍କର ଏକ ଆଲୋଚନା ସଭା ଅନୁଷ୍ଠିତ ହେଉଥିଲା ଓ ନିଜେ ବୈକୁଣ୍ଠନାଥ ତହିଁର ନେତୃତ୍ୱ ନେଉଥିଲେ। ଆଲୋଚନାର ବିଷୟବସ୍ତୁ ଥିଲା, ଛାତ୍ରର କର୍ତ୍ତବ୍ୟ, ବ୍ୟାୟାମର ଆବଶ୍ୟକତା, ସୁନାଗରିକ କିଏ, ସତ୍ ସଙ୍ଗର ଉପାଦେୟତା ଓ ସମାଜ ସେବାର ମୂଲ୍ୟ ଇତ୍ୟାଦି। ଆଲୋଚନାର ଉଦ୍ଦେଶ୍ୟ ଥିଲା, ଛାତ୍ରମାନଙ୍କର ସଙ୍କୋଚ ଦୂରୀକରଣ, ବାକ୍‌ପଟତା ପରିବର୍ଦ୍ଧନ ଓ ତା ସଙ୍ଗେ ସଙ୍ଗେ ଚରିତ୍ର ଗଠନ। ବୈକୁଣ୍ଠନାଥ ବହୁ ସମୟରେ ମହାପୁରୁଷମାନଙ୍କର ଚରିତ୍ର ବର୍ଣ୍ଣନା କରି ସେମାନଙ୍କ ମହାଭାବ ଛାତ୍ର ମାନଙ୍କୁ ଯେପରି ଉଦ୍‌ବୁଦ୍ଧ କରିବ ଓ ସେମାନଙ୍କ ବିଭିନ୍ନ ମନୋବୃତ୍ତିର ଯେପରି ପୁଷ୍ଟିସାଧିତ ହୋଇ ପାରିବ ତତ୍‌ପ୍ରତି ଯତ୍ନଶୀଳ ହେଉଥିଲେ। ନରହନ୍ତା ଦସ୍ୟୁ ରତ୍ନାକର କିପରି 'ରାମ' ନାମ ଉଚ୍ଚାରଣ କରୁଁ କରୁଁ ବାଲ୍ମିକୀ ରୂପେ ବିଶ୍ୱ ବରେଣ୍ୟ କବି ହୋଇ ପାରିଥିଲେ, ଏହି ଦୃଷ୍ଟାନ୍ତ ସାହାଯ୍ୟରେ ସେ ଯୁବକମାନଙ୍କୁ ଏକାଗ୍ରତାର ମୂଲ୍ୟ ତଥା ଏକାଗ୍ରତା ବଳରେ ଯେ ପୃଥିବୀରେ କୌଣସି ବିଷୟ ଅସମ୍ଭବ ନୁହେଁ, ଏକଥା ଶିକ୍ଷା ଦେଉଥିଲେ। ପୁଣି, ବାଗ୍‌ଦାଦ୍ ନିବାସୀ ବିଖ୍ୟାତ ପଣ୍ଡିତ ଅବଦୁସ୍ ବାଲ୍ୟକାଳରେ ମାତାଙ୍କଠାରୁ ସତ୍ୟ କହିବାର ଉପଦେଶ ପାଇ ନୃଶଂସ ଡ଼କେଇତମାନଙ୍କ ନିକଟରେ ମଧ୍ୟ ନିଜ ପାଖରେ ଲୁକ୍କାୟିତ ସ୍ୱର୍ଣ୍ଣ ମୋହର ଥିବା କଥାକୁ ଗୋପନ ରଖି ନଥିଲେ ଓ ଏହି ଉପଦେଶ ତାଙ୍କର ପରବର୍ତ୍ତୀ ଜୀବନରେ ସହାୟକ ହୋଇଥିଲା। ଏଥିରୁ ସେ ସତ୍ୟର ମର୍ଯ୍ୟାଦା ସତ୍ୟ ହେତୁ ଆତ୍ମମନୋବଳର ବୃଦ୍ଧି ଯୁବକ ମାନଙ୍କ ମନରେ ଜାଗରୁକ କରୁଥିଲେ। ବେଳେ ବେଳେ ପିମ୍ପୁଡ଼ି ଦଳର କାର୍ଯ୍ୟର ତତ୍ପରତା ବୁଝାଉଥିଲେ। ଏକ ଜଳପୂର୍ଣ୍ଣ ପଥର ପାତ୍ରରେ ମହୁପୂର୍ଣ୍ଣ ଏକ ବୋତଲ ରହିଛି, ପିମ୍ପୁଡ଼ିମାନେ ଦଳ ବାନ୍ଧି

ସେଠାକୁ ଯିବାକୁ ଚାହୁଁଥିଲେ। ପାଣି ପାରିହେବା କାଳେ ଅନେକେ ମୃତ୍ୟୁବରଣ କରୁଥିଲେ, ଧୀରେ ଧୀରେ ପିମ୍ପୁଡ଼ି ମାନଙ୍କ ଶବ ଭାସି ସେତୁ ନିର୍ମିତ ହେଲା, କ୍ଷୁଧାର୍ତ୍ତ ଜୀବିତ ପିମ୍ପୁଡ଼ିଗଣ ସେହି ସେତୁ ପାରି ହୋଇ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲେ। କିପରି ଅଦ୍ଭୁତ ନୀତି ଶିକ୍ଷା ଏହା। ଆମ୍ଭେମାନେ କଣ ଏହି ପିମ୍ପୁଡ଼ି ଜାତିଠାରୁ ହୀନ, ଅଧମ।

ସାପ୍ତାହିକ କାର୍ଯ୍ୟସୂଚୀ ମଧ୍ୟରେ ମୁଷ୍ଟିଭିକ୍ଷା ସଂଗ୍ରହ ଅନ୍ୟ ଏକ ପ୍ରଧାନ କାର୍ଯ୍ୟ ଥିଲା। ଏହାର ଆବଶ୍ୟକତାର ମୁଖ୍ୟ କାରଣ ହେଲା ଦରିଦ୍ର ବିଦ୍ୟାର୍ଥୀ ମାନଙ୍କୁ ଆର୍ଥିକ ସାହାଯ୍ୟ ଦାନ। ସେତେବେଳେ ବାହାମ ଗ୍ରାମର ସ୍ୱର୍ଗୀୟ ପୁରୁଷୋତ୍ତମ ନାୟକଙ୍କ ଶିକ୍ଷା ଦାୟିତ୍ୱ ବୈକୁଣ୍ଠନାଥ ସ୍ୱୟଂ ବହନ କରିଥିଲେ। ସାମାଜିକ ଭିତ୍ତି ଉପରେ ଏହା ପ୍ରତିଷ୍ଠିତ ହୋଇଥିଲା। ପ୍ରତ୍ୟେକ ଆରଣ୍ୟକ ବ୍ରାହ୍ମଣ ଘରେ ଗୋଟିଏ ଲେଖାଏଁ ଟୁପୁଲି (ପାଛେଇ) ଦିଆ ଯାଇଥାଏ। ତହିଁରେ ପ୍ରତିଦିନ ଘରଣୀ ମୁଠିଏ ଲେଖାଁଏ ଚାଉଳ ଦିଅନ୍ତି; ରବିବାର ଦିନ ଯୁବକ ଦଳ ଭୁଗା (ପାଛିଆ) ଧରି ଘରେ ଘରେ ବୁଲି ଚାଉଳ ସଂଗ୍ରହ କରି ଆଣୁଥିଲେ। ବୈକୁଣ୍ଠ ପୂଜାରୀଙ୍କ ଗୃହଟି ସେତେବେଳେ ବର୍ତ୍ତମାନ ଭଳି କୋଠାଘର ହୋଇ ନଥାଏ। ଗୃହ ନିର୍ମାଣ ତାଙ୍କର ଚାକିରୀ କରିବା ପରେ ୧୯୦୧ ରେ ହୋଇଛି। ଗୃହର ଗୋଟିଏ ଛୋଟ କୋଠରୀରେ ଚାଉଳ ସଞ୍ଚିତ ହେଉଥାଏ ଓ ପ୍ରୟୋଜନ ସମୟରେ ବିକ୍ରୟ ହୋଇ ଲବ୍ଧ ଅର୍ଥରୁ ବିଦ୍ୟାର୍ଥୀମାନଙ୍କୁ ସାହାଯ୍ୟ ପ୍ରଦାନ କରାଯାଉଥାଏ। ଉତ୍ସାହ ଓ ଧୈର୍ଯ୍ୟ ସହ ସ୍ୱେଚ୍ଛା ସେବକଗଣ ମୁଷ୍ଟି ଭିକ୍ଷା ସଂଗ୍ରହ କରିବା ଓ ରବିବାର ଦିନକୁ ସେବା ଦିବସ ବୋଲି ବୈକୁଣ୍ଠନାଥଙ୍କ ନିର୍ଦ୍ଦେଶକୁ ପାଳନ କରିବା ସାମାନ୍ୟ ପ୍ରଶଂସାର ବିଷୟ ନୁହେଁ। ସେ ଯୁବକ ମାନଙ୍କ ହୃଦୟରେ ଏହି ମହତ୍ତ୍ୱ ସମ୍ପର୍କରେ ଦୃଢ଼ ଧାରଣା ସୃଷ୍ଟି କରିଥିଲେ ଯେ, ସେବା କରିବା ଅଭ୍ୟାସ ଶିକ୍ଷା ହେଉଛି ସମସ୍ତ ଉନ୍ନତିର ମୂଳ, ଜୀବନ ମାର୍ଗର ଉପାଦେୟ ସମ୍ବଳ। ବିଦ୍ୟାଦାନ ଅମୂଲ୍ୟ ଅଟେ।

ବୈକୁଣ୍ଠନାଥ ଜିଲ୍ଲା କାଉନସିଲର ସମ୍ପାଦକ ହେବା ୨/୩ ବର୍ଷ ପୂର୍ବରୁ ତହିଁର ଚେୟାରମେନ ଅର୍ଥାଭାବର ଆଳରେ ୮୫ ଟି ସ୍କୁଲ ଉଠାଇ ଦେଇଥିବା କଥା ଚନ୍ଦ୍ରଶେଖର ବେହେରା ଗ୍ରୀଷ୍ମାବକାଶରେ ନାଗପୁରରୁ ସମ୍ବଲପୁର ଆସିଥିବା ବେଳେ ଶୁଣି ଏହାର ପ୍ରତିବାଦ କରିବାକୁ ଲୋକଙ୍କୁ ଉଦ୍‌ବୋଧନ ଦେଇଥିଲେ। ଏବେ ତାଙ୍କ ଶ୍ୟାଳକ ସମ୍ପାଦକ ହେବାରୁ ଏକ ପ୍ରତିନିଧି ଦଳର ନେତୃତ୍ୱ ନେଇ ଚେୟାରମେନ ଶ୍ରୀ ଜେ. ଏନ୍. ସେନ୍‌ଙ୍କ ସହିତ ସାକ୍ଷାତ କରି ଉଠାଇ ଦେଇଥିବା ସ୍କୁଲ ଗୁଡ଼ିକ ପୁନଃପରିଚାଳନା ପାଇଁ ଦାବୀ କଲେ। ପରିଣାମରେ ୫୦ ଟି ସ୍କୁଲ ଚଳାଇବାକୁ ଜିଲ୍ଲା କାଉନସିଲ୍ ଅର୍ଥ ମଞ୍ଜୁର କଲେ।

କହିବା ବାହୁଲ୍ୟ ଯେ ଏ ସଫଳତାର ମୂଳରେ ବୈକୁଣ୍ଠନାଥଙ୍କ ପ୍ରଭାବ ରହିଥିଲା । ସରକାରୀ କର୍ମଚାରୀ ହୋଇଥିବାରୁ ସେ ସିଧାସଳଖ ଏ ଦାବୀ କରିପାରି ନଥିଲେ ହେଁ ସ୍ୱପକ୍ଷୀୟ ମୁଖ୍ୟ ସଭ୍ୟଙ୍କୁ ପ୍ରବର୍ତ୍ତାଇ ଏ ମହତ୍ କାର୍ଯ୍ୟ ସମ୍ପାଦନରେ ସମର୍ଥ ହୋଇଥିଲେ । ଜିଲ୍ଲା ମଧ୍ୟରେ ଶିକ୍ଷା ପ୍ରସାର ସ୍ୱପ୍ନ ସେ ଏହିପରି କାର୍ଯ୍ୟକାରୀ କରିଥିଲେ । ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ପକ୍ଷରେ ଏହାହିଁ ଉପଯୁକ୍ତ କର୍ମ ଏତଦ୍ୱାରା ବଞ୍ଚିତ ହୋଇଥିବା ବହୁ ବାଳକ ବାଳିକା ଶିକ୍ଷା ପାଇଲେ ।

ଜ୍ଞାନ ଆହରଣ ହିଁ ବୈକୁଣ୍ଠନାଥଙ୍କ ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଥରେ ହିସଲପ କଲେଜର ଅଧ୍ୟକ୍ଷଙ୍କ ପାଖକୁ ସେ ଲେଖିଥିଲେ -

"True honour lies in the honest work done and not in the mere university stamp."

ବୈକୁଣ୍ଠନାଥ ସରକାରୀ ଚାକିରୀ କରିବା ଅଭିଳାଷ ରଖି ନଥିଲେ । ବି.ଏଲ୍. ପଢ଼ା ସାରି ସନ ୧୮୯୯ ରେ ସେ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କରି ନିଜ ଅନୁପସ୍ଥିତ କାଳରେ ଘଟିଥିବା ବିଶୃଙ୍ଖଳ ଅବସ୍ଥାକୁ ଉଚିତ ମାର୍ଗକୁ ଆଣିବା ନିମିତ୍ତ ତତ୍ପର ହୋଇ ଉଠିଲେ । ସମ୍ବଲପୁରର ତଦାନୀନ୍ତନ ଡ଼େପୁଟି କମିଶନର ଜିଲ୍ଲାର ପ୍ରଥମ ଏମ୍.ଏ. ଉପାଧିଧାରୀଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଉଚିତ ବିବେଚନା କରି ତାଙ୍କୁ ଅତିରିକ୍ତ ସହକାରୀ କମିଶନର (Extra Assistant Commissioner) ଭାବରେ ନିଯୁକ୍ତ କରିବାକୁ ଇଚ୍ଛା ପ୍ରକାଶ କଲେ । ଦାଶରଥୀ ପୂଜାରୀ ନିଷ୍ଠାପର ଭାବରେ ସରକାରୀ ଚାକିରୀ କରି ରାୟ ସାହେବ ଉପାଧି ଲାଭ କରିଥିଲେ । ସେ ଜିଲ୍ଲାପାଳଙ୍କ ଇଚ୍ଛାରେ ସ୍ୱୀକୃତ ହେଲେ । ଚାକିରୀ କରିବା ମନୋବୃତ୍ତି ନଥିଲେ ସୁଦ୍ଧା ବୈକୁଣ୍ଠନାଥ ପିତୃଦେବଙ୍କ ନିଷ୍ପତ୍ତି ଅନୁଯାୟୀ ରାଜକାର୍ଯ୍ୟ କରିବାକୁ ବାଧ୍ୟ ହେଲେ ।

ମାସିକ କେବଳ ସାର୍ଦ୍ଧ ଦୁଇଶତ ମୁଦ୍ରା ବେତନରେ ତେଇଶ ବର୍ଷ ବୟସରେ ସମ୍ବଲପୁରର ଅତିରିକ୍ତ ସହକାରୀ କମିଶନର ରୂପେ ସନ୍ ୧୯୦୦ ରେ ବୈକୁଣ୍ଠନାଥ ନିଯୁକ୍ତ ହେଲେ । ତଦାନୀନ୍ତନ ନିୟମାନୁଯାୟୀ ସେ ଜିଲ୍ଲା କାଉନସିଲ ସମ୍ପାଦକ ଭାବରେ ମଧ୍ୟ କାର୍ଯ୍ୟ କଲେ । ଅଫିସିଏଟିଂ ଡ଼େପୁଟି କମିଶନର ମିଷ୍ଟର ଏଫ୍. ଡ଼େବର ବୈକୁଣ୍ଠନାଥଙ୍କ ସମ୍ପର୍କରେ ଏହି ଅଭିମତ ଦେଇଥିଲେ ଯେ ସେ ବେସାମରିକ ଶାସନ ବିଭାଗକର୍ତ୍ତା ତଥା

ଜିଲ୍ଲା କାଉନ୍‌ସିଲର ସମ୍ପାଦକ ଭାବରେ ଭଲ କାର୍ଯ୍ୟ କରିଥିବାରୁ କର୍ମକର୍ତ୍ତା ହେଲେ ଭଲ କାର୍ଯ୍ୟ କରିବା ସୂଚନା ମିଳେ -

"Mr. Baikunth Nath Pujari has done much good civil work. He has been secretary of the District Council and did well showing promise of being good as an Executive Officer."

ସନ୍ ୧୯୦୧ ର ଜନଗଣନା କାର୍ଯ୍ୟାରମ୍ଭ ହେଲା। ଅଣଓଡ଼ିଆ କର୍ତ୍ତା ଓ କର୍ମଚାରୀବୃନ୍ଦଙ୍କ କାର୍ଯ୍ୟ ପ୍ରଣାଳୀ ବିରକ୍ତିକର ଓ ଆପତ୍ତିଜନକ ଥିଲା। ଏହାର ପ୍ରତିକାର ନିମନ୍ତେ ଏକ ପ୍ରତିନିଧି ଦଳ ଜିଲ୍ଲାପାଳଙ୍କ ସହ ସାକ୍ଷାତ କରିବା ଫଳରେ ଜନଗଣନାର ଦାୟିତ୍ୱ ବୈକୁଣ୍ଠନାଥଙ୍କ ଉପରେ ନ୍ୟସ୍ତ କରାଯାଇଥିଲା। ତାଙ୍କ ସମ୍ପର୍କରେ ଡେ଼ପୁଟି କମିଶନର ମିଷ୍ଟର ଏଫ୍.ଏସ୍. ସ୍ଲୋକକ୍ ତା ୬-୩-୧୯୦୧ ରେ ଜନଗଣନା ରିପୋର୍ଟରେ ଲେଖିଛନ୍ତି ବାକୀଯା ପଡ଼ିଥିବା ଓ ବିଶୃଙ୍ଖଳାରେ ପୂରିଥିବା ଜନଗଣନା କାର୍ଯ୍ୟକୁ କଠିଣ ପରିଶ୍ରମ ଓ ଦକ୍ଷତା ସହିତ ନିର୍ବାହ କରି ଜଣେ ପ୍ରବୀଣ କର୍ମକର୍ତ୍ତା ବୋଲି ଆପଣାକୁ ପ୍ରମାଣିତ କରି ପାରିଛନ୍ତି।

"The census work of his District was in great arrears and confusion when Mr. Baikunth Nath Pujari was placed in charge of it. He was told that he would have a hard task to bring it to a successful end. This he did at a great expenditure of energy and hard work, and he deserves the greatest credit for it. He has cut himself to be a very good executive officer and earnestly hope he will soon be made permanent as an Extra Assistant Commissioner."

କବିବର ୰ ଗଙ୍ଗାଧର ମେହେର ଲେଖିଛନ୍ତି -

"ହେବାରୁ ସମ୍ବଲପୁର ନେତ୍ର ଉନ୍ମୀଳିତ,
କଷ୍ଟକୁ ନ ଗଣି ହେଲା ଉତ୍କଳେ ମିଳିତ।
ହିନ୍ଦିର ଗ୍ରାସରୁ ହେଲା କି କଷ୍ଟେ ଉଦ୍ଧାର,

ରାହୁ କବଳରୁ ସୁଧାକର ପରକାର।"

ଉଚ୍ଚ ପଦାଧିକାରୀ ହୋଇ ମଧ୍ୟ ବୈକୁଣ୍ଠନାଥ ସରଳ ଅଭିମାନ ଶୂନ୍ୟ ଥିଲେ। ପ୍ରୟୋଜନାନୁସାରେ ସାଧାରଣ ଗୃହ କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ ହେଉ ନଥିଲେ ଦିନକରେ ଜାଳେଣିକାଠ ଅଭାବ ହେତୁ ନିଜେ ଏକ କାଠ ଗଣ୍ଡି ଫାଣି ଅଭାବ ମେଣ୍ଟାଇଥିଲେ। ହୁଡାପଡ଼ା ମନ୍ଦିରରେ ଠାକୁରଙ୍କ ଭୋଗ ତିଆରି କରିବା ଲୋକର ଅସୁସ୍ଥତା ହେତୁ ନିଜେ ସେ କାର୍ଯ୍ୟ କରିଥିଲେ। ଏଭଳି କାର୍ଯ୍ୟ କେତେ ଜଣ ଏଭଳି ଉଚ୍ଚ ପଦାଧିକାରୀ କରିଥାନ୍ତି ?

ଦଶ ଓ ଦେଶର ସେବା ନିମନ୍ତେ ବିମୁଖ ବ୍ୟକ୍ତି ସାମାନ୍ୟ କର୍ମଚାରୀ ହୋଇ ମଧ୍ୟ କାର୍ଯ୍ୟର ଭିଡ଼ ହେତୁ ଅନ୍ୟ ବିଷୟ ପ୍ରତି ଦୃଷ୍ଟି ଫେରାଇବାକୁ ସମୟାଭାବର ଆଳ ଦେଖାଇଥାନ୍ତି। 'ଇଚ୍ଛା ଥିଲେ ବୁଦ୍ଧି ଆପେ ଆପେ ଆସେ', ଏହାକୁ ସେମାନେ ସ୍ୱୀକାର କରନ୍ତି ନାହିଁ। ସମ୍ଭବତଃ ସେମାନଙ୍କ ମତ 'ଆଗେ ଜଠର ପରେ ସୋଦର'। ବୈକୁଣ୍ଠନାଥଙ୍କ ଜୀବନ କିନ୍ତୁ ଅନ୍ୟ ଉପାଦାନରେ ଗଠିତ ହୋଇଥିଲା। ରାଜ୍ୟ ସରକାରଙ୍କ ବେତନ ଭୋଗ ଫଳରେ ସରକାରୀ କାର୍ଯ୍ୟ ସମ୍ପାଦନ ଦାୟିତ୍ୱ ଅବଶ୍ୟ ରହିଛି; କିନ୍ତୁ ଜନ୍ମଭୂମି ପ୍ରତି, ସ୍ୱଜାତି ତଥା ସ୍ୱମାତୃଭାଷା ପ୍ରତି ଦାୟିତ୍ୱ କୌଣସି ଅଂଶରେ ନ୍ୟୂନ ନୁହେଁ ବୋଲି ବୈକୁଣ୍ଠନାଥ ଉପଲବ୍ଧି କରିଥିଲେ। ସମ୍ବଲପୁର, ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ ହୋଇ ଓଡ଼ିଶାରେ ମିଶିଲେ ଅଧିକ ସୁବିଧା ସୁଯୋଗ ମିଳିବ ବୋଲି ଏଠାକାର ନେତାଏ ଆନ୍ଦୋଳନ କରି ନ ଥିଲେ। ଆନ୍ଦୋଳନର ମୂଳ କାରଣ ଅଦାଲତରୁ ସେମାନଙ୍କ ମାତୃଭାଷା ଉଠାଇ ଦେବା। ଏଥିପାଇଁ ବ୍ୟକ୍ତିଗତ ଚେଷ୍ଟାଠାରୁ ସମ୍ମିଳିତ ଚେଷ୍ଟା ହିଁ ଅଧିକ ପ୍ରୟୋଜନ। ଜନମତ ଜାଗରଣ ହିଁ ପ୍ରୟୋଜନ ଏଥିପାଇଁ ଜନଗଣନା ମାହେନ୍ଦ୍ର ସୁଯୋଗ ପ୍ରଦାନ କଲା। ଏ ଜିଲ୍ଲାର ପ୍ରତି ଗ୍ରାମବାସୀଙ୍କ ସହିତ ବୈକୁଣ୍ଠନାଥ ପ୍ରତ୍ୟକ୍ଷ ସଂସର୍ଗରେ ଆସି ସେମାନଙ୍କର ମନୋବୃତ୍ତି ଜାଣି ପାରିଲେ। ବିଗତ ଗ୍ରୀଷ୍ମାବକାଶରେ ପଣ୍ଡିତ ଚନ୍ଦ୍ରଶେଖର ବେହେରା ଏଠାକୁ ଆସି ଲୋକଙ୍କ ହୃଦରେ ରୋପଣ କରିଥିବା ଜାତୀୟତାବୀଜ ଅଙ୍କୁରିତ ହୋଇଛି। ତାକୁ ପଲ୍ଲବିତ ଓ ପ୍ରସ୍ଫୁଟିତ କରିବା ପାଇଁ ପ୍ରତିବନ୍ଧକ ଗୁଳ୍ମାଦିର ମୂଳୋତ୍ପାଟନ କରିବାକୁ ହେବ। ଦୀର୍ଘକାୟ, ପ୍ରଶସ୍ତବକ୍ଷ, ବଳିଷ୍ଠଭୁଜ ଓ ଉଷ୍ଣୀଶଧାରୀ ବୈକୁଣ୍ଠଙ୍କ ବ୍ୟକ୍ତିତ୍ୱ ସହଜରେ ଲୋକଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା। ସେ ପାଶ୍ଚାତ୍ୟ ରୀତିରେ ଉଚ୍ଚ ଶିକ୍ଷିତ ହୋଇ ଉଚ୍ଚ ରାଜପଦାରୂଢ଼ ହେଲେ ହେଁ ତାଙ୍କର ପାରମ୍ପରିକ ଜୀବନ ବତ୍ସଳତାର ପ୍ରତୀକ

ଚନ୍ଦନ ଚର୍ଚ୍ଚିତ ଭାଲପଟ ଲୋକମନ ଆକର୍ଷଣର ଅନ୍ୟ କାରଣ। ସର୍ବୋପରି ତାଙ୍କର ମିଷ୍ଟବଚନ ତଥା ଦେଶଦିତୈଷଣା ଲୋକଙ୍କୁ ମୁଗ୍ଧ କରୁଥିଲା। ଅଣଓଡ଼ିଆ କର୍ମଚାରୀଗଣ ଦିବସରେ ଲୋକଙ୍କ ମନରେ ସଞ୍ଚାର କରିଥିବା ଭୀତି ଦୂର କରିବାକୁ ବୈକୁଣ୍ଠନାଥ ରାତ୍ରରେ ସେମାନଙ୍କ ପାଖରେ ପହଞ୍ଚୁଥିଲେ। ସମ୍ବଲପୁରବାସୀଙ୍କ ପକ୍ଷରେ ଏହି ସାଂସ୍କୃତିକ ଖଣ୍ଡ ପ୍ରଳୟ କାଳରେ ଷଡ଼ଯନ୍ତ୍ରୀଙ୍କ ବ୍ୟୁହଭେଦ ଉଦ୍ଦେଶ୍ୟରେ କେତେକ କ୍ଷଣଜନ୍ମା ଦେଶପ୍ରେମୀ ନିଜର ନିରଳସ ଚେଷ୍ଟାରେ ସୃଷ୍ଟି କରିଥିବା ଜାତୀୟତା ଉତ୍ସକୁ ପରିପୁଷ୍ଟ କରିଥିଲା ବୈକୁଣ୍ଠନାଥଙ୍କ ଉଦ୍ୟମ। ଜଣେ ଓଡ଼ିଆ ଉଚ୍ଚ ରାଜ ପଦାଧିକାରୀ ନିଜ ରାଜକାର୍ଯ୍ୟ ଦିନରେ ନିର୍ବାହ କରି ରାତ୍ରିରେ ଅଶ୍ୱାରୋହଣରେ ଦୂରଦୂରାନ୍ତର ଯାତ୍ରା କରି ଲୋକଙ୍କ ପ୍ରାଣରେ ଜାତୀୟତା ଉଦ୍ରେକ କରିବା ସାଧାରଣ କଥା ନୁହେଁ। ସେପରି ପ୍ରବଳ ନୈତିକ ସାହସ ନଥିଲେ ଏହା କରିବା ସମ୍ଭବପର ନୁହେଁ। ବସ୍ତୁତଃ, ଏହି ଜିଲ୍ଲାରେ ହିନ୍ଦୀ ପରିବର୍ତ୍ତରେ ଓଡ଼ିଆ ଭାଷା ପ୍ରଚଳନ ବ୍ୟାପାରରେ ବୈକୁଣ୍ଠନାଥଙ୍କ ଭୂମିକା ଅନନ୍ୟସାଧାରଣ। ସମ୍ବଲପୁରରେ ଏ ଭାଷା ଆନ୍ଦୋଳନ ସାରା ଓଡ଼ିଶାରେ ଜାତୀୟତା ଜାଗ୍ରତ କରିଥିଲା। ସେସମୟରେ ଏଠାରେ ଓଡ଼ିଆ ଭାଷା ପ୍ରଚଳନର ଯୁକ୍ତିଯୁକ୍ତତା ଉପରେ ତଦନ୍ତ କରିବାକୁ ଡେ଼ପୁଟି କମିଶନର, କମିଶନର ଓ ଚିଫ୍ କମିଶନର ଆଦି ଲୋକଙ୍କ ଆଗେ ଉପସ୍ଥିତ ହେଲେ ସେମାନେ ନିଜ ମାତୃଭାଷା ପ୍ରଚଳନର ସୁବିଧା ସୁଯୋଗ କିପରି ଉପସ୍ଥାପନ କରିବେ, ସେ ବିଷୟରେ ବୈକୁଣ୍ଠନାଥ ଲୋକଙ୍କୁ ପରାମର୍ଶ ଦେଉଥିଲେ। ସେ କହୁଥିଲେ ଏଥିରେ ସାମୂହିକ ସ୍ୱାର୍ଥ ଜଡ଼ିତ। ଏହି ଜାତୀୟ ସ୍ୱାର୍ଥ ପୂରଣ ପାଇଁ ଭାତୃସୁଲଭ ଐକ୍ୟ ଆବଶ୍ୟକ। ତେବେ ସିନା ଅଣଓଡ଼ିଆ କର୍ମଚାରୀଗଣ ଆମ୍ଭ ଭିତରେ ବିଭେଦ ସୃଷ୍ଟି କରିବା ଚେଷ୍ଟା ବ୍ୟର୍ଥ ହେବ। ଆମ୍ଭର ନିଜ ସ୍ୱାତନ୍ତ୍ର୍ୟ, ସଂସ୍କୃତି ଓ ପରମ୍ପରା ରହିଛି। ହିନ୍ଦୀ ଆମ୍ଭର ଅଦାଲତ ଭାଷା ହେଲେ ଆମ୍ଭେ କେବେ ବରଦାସ୍ତ କରିବା ନାହିଁ। ଏହାର ପ୍ରଚଳନରେ ଆମ୍ଭେ ଘୋର ଅସୁବିଧା ଭୋଗ କରିବା। ପଳାୟନ ଅବା ପରାଜୟ ମନୋବୃତ୍ତି ପ୍ରକାଶ ଶୋଭନୀୟ ନୁହେଁ; ଉଦ୍ୟମ ବିନା ଫଳଲାଭ କରିବା ଆଶା ବୃଥା, ନିଶ୍ଚେଷ୍ଟ ରହି ବିଫଳତା ପାଇଁ ଆମେ ଈଶ୍ୱରଙ୍କୁ ଦାୟୀ କରିଥାଉଁ ନିଜର ଦୁର୍ବଳତା, ଭୀରୁତା ଓ ଆଳସ୍ୟତା ସମ୍ପୂର୍ଣ୍ଣ ରୂପେ ବିସ୍ମୃତ ହେଉ।"

ଏହିପରି ବୈକୁଣ୍ଠନାଥ ଲୋକଙ୍କର ମାନସିକ ଦୁର୍ବଳତା ଦୂର କରି ଦେଶ, ଜାତି ଓ ମାତୃଭାଷା ପ୍ରତି ସେମାନଙ୍କ ମମତା ଜାଗରୁକ କରିଥିଲେ। ଏହି କାର୍ଯ୍ୟ ସାଧନ

ପାଇଁ ତାଙ୍କୁ ବହୁ ବିନିଦ୍ର ରଜନୀ ଯାପନ କରିବାକୁ ହୋଇଥିଲା।

ବୈକୁଣ୍ଠନାଥଙ୍କର ବିଶ୍ୱାସ ଥିଲା ଯେ ଯୁବକମାନେ ହିଁ ଦେଶର ଭବିଷ୍ୟତ: ତାଙ୍କର ହୃଦୟ ମଧ୍ୟରେ ଲୁକ୍କାୟିତ ଉତ୍ସାହ ଓ ଉଦ୍ଦୀପନାକୁ ଜାଗ୍ରତ କରିପାରିଲେ, ସେମାନେ ସଙ୍ଗଠିତ ହୋଇ ଦୁନିଆରେ ମହତ୍ କାର୍ଯ୍ୟ ସାଧନ କରିବାକୁ ସମର୍ଥ ହୋଇପାରିବେ। ଏହା ସମାଜର କ୍ଷୁଦ୍ର ଗଣ୍ଡି ମଧ୍ୟରୁ ହିଁ ଅୟମାରମ୍ଭ ହେବା ଉଚିତ। କୌଣସି ପ୍ରତିବେଶୀ ଗୃହରେ ବ୍ରତ ବିବାହାଦି ଉପଲକ୍ଷରେ ହେଉଥିବା ସମ୍ମିଳନୀରେ ସେ ବହୁ ଯୁବଗୋଷ୍ଠୀକୁ ନେଇ ଉପସ୍ଥିତ ହେଉଥିଲେ। ସ୍ଥାନୀୟ ବ୍ରହ୍ମପୁରା ଓ ସମଲେଶ୍ୱରୀ ମନ୍ଦିରରେ, ଯେଉଁ ବିରାଟ ଭୋଜର ବ୍ୟବସ୍ଥା ହେଉଥିଲା, ସେଥିରେ ମଧ୍ୟ ଯୁବଗୋଷ୍ଠୀକୁ ନିୟୋଜିତ କରି ଶୃଙ୍ଖଳାର ସହିତ ପରିବେଷଣ କାର୍ଯ୍ୟ ସମ୍ପାଦନ କରୁଥିଲେ। ଶତ ଶତ ଅତିଥିଙ୍କ ମଧ୍ୟରେ ଠିଆ ହୋଇ ଗମ୍ଭୀର ସ୍ୱରରେ 'ଲାଗିଯାଅରେ ପିଲେ' ବୋଲି ଡ଼ାକ ଦେବା ମାତ୍ରେ ଯୁବକଗଣ ତାଙ୍କ ନିର୍ଦ୍ଦେଶାନୁସାରେ ପରିବେଷଣ କାର୍ଯ୍ୟରେ ଲାଗି ପଡୁଥିଲେ। ସେ ନିଜେ ମଧ୍ୟ ମିଷ୍ଟାନ୍ନ ଓ ପୁରି ଆଦି ପାତ୍ର ଅବା ପାୟସ ଭାଣ୍ଡ ନେଇ ଲୋକଙ୍କୁ ପରିବେଷଣ କରୁଥିଲେ। ଶୃଙ୍ଖଳା ଭାବେ ଅଳ୍ପ ସମୟରେ କାର୍ଯ୍ୟଟି ସମ୍ପନ୍ନ ହେଉଥିଲା। ଆଜିକାଲି ସ୍ୱଳ୍ପ ଶିକ୍ଷିତ ଯୁବକମାନେ ବି ଏପରି କାର୍ଯ୍ୟକୁ ବୋଧହୁଏ ଭ୍ରୂକୁଞ୍ଚନ କରିବେ। କିନ୍ତୁ ମନସ୍ୱୀ ବୈକୁଣ୍ଠନାଥ ସାମାଜିକ ବନ୍ଧନ ଓ ସହଯୋଗ ରକ୍ଷା ନିମନ୍ତେ ଏହାର ଏକାନ୍ତ ଉପଯୋଗିତା ଉପଲବ୍ଧି କରି ନିଜ ଜୀବନରେ ତାର ପ୍ରୟୋଗ କରିଥିଲେ।

ଜନଗଣନା ସମୟରେ କେଉଁଭାବେ ଲୋକଙ୍କ ମଧ୍ୟରେ ଐକ୍ୟ ସ୍ଥାପିତ ହେଲା ଏବଂ ଏହା ବୈକୁଣ୍ଠନାଥଙ୍କ ପରି ଜଣେ ସଦ୍ୟ ନିଯୁକ୍ତ ଅଫିସରଙ୍କ ଦ୍ୱାରା ସମ୍ଭବପର ହେଲା ଏକଥା ମରହଟ୍ଟା ଜିଲ୍ଲାପାଳ ଶ୍ରୀ ଏସ୍.ଏମ୍. ଚିଟ୍‌ନବିସ୍‌ଙ୍କ ଦୃଷ୍ଟି ଏଡ଼ାଇ ପାରି ନଥିଲା। ସେ ବୈକୁଣ୍ଠଙ୍କୁ ଏକ ଅଶୁଭ ମୁହୂର୍ତ୍ତରେ ମଧ୍ୟପ୍ରଦେଶର ଜବଲପୁରକୁ ସ୍ଥାନାନ୍ତରିତ କଲେ।

ଜନ୍ମଭୂମିରୁ ବହୁ ଦୂରସ୍ଥିତ ଏକ ଅଣଓଡ଼ିଆ ସ୍ଥାନରେ ଓଡ଼ିଆ ଜାତିର ସୁନାମ ରକ୍ଷା ନିମନ୍ତେ କେତେ ଉତ୍ସାହରେ କାର୍ଯ୍ୟ କରିବେ ବୋଲି ପ୍ରସ୍ଥାନ ସମୟରେ ସେ କଳ୍ପନା କରିଥିଲେ କିନ୍ତୁ ଅଦୃଷ୍ଟର ପରିହାସ ! ତାଙ୍କର କଳ୍ପନା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ। ଜବଲପୁରରୁ ମାସକ ପରେ ସେଓନୀକୁ ସେ ପ୍ରେରିତ ହେଲେ। ଏଠାରେ କାର୍ଯ୍ୟ ହାଲୁକା ଥିବାରୁ ସେ କେଇମାସ ମାତ୍ର ଶାନ୍ତିରେ କାଳ ଯାପନ କଲେ। କିନ୍ତୁ ବର୍ଷକ ମଧ୍ୟରେ ପୁଣି ତାଙ୍କୁ ନାଗପୁରକୁ ପରିବର୍ତ୍ତନ କରାଗଲା। ସେଠାରେ ସେ ଉମରେର

ତହସିଲର ଏସ୍.ଡ଼ି.ଓ. ତଥା ନାଗପୁରର ଟ୍ରେଜେରୀ ଅଫିସର ରୂପେ କାର୍ଯ୍ୟ ତୁଲାଇଲେ। ଏହି ସମୟରେ ବିଭାଗୀୟ ପରୀକ୍ଷା ପ୍ରସ୍ତୁତି ପାଇଁ ତାଙ୍କୁ ଅଧିକ ପରିଶ୍ରମ କରିବାକୁ ପଡ଼ିଲା। ତମ୍ବୁ ଭିତରେ ପ୍ରତ୍ୟହ ଦିନରାତି ଯାପନ କରୁଥିବା ବେଳେ ଅତ୍ୟଧିକ ମାନସିକ ପରିଶ୍ରମ ହେତୁ ତାଙ୍କର ସ୍ୱାସ୍ଥ୍ୟ ଭଗ୍ନ ହେଲା - କାଶ ରୋଗ ଦେଖାଗଲା। କିନ୍ତୁ ସେ ଯେ ମାରାତ୍ମକ ରୋଗରେ ଆକ୍ରାନ୍ତ ହୋଇଛନ୍ତି, ଏହା ସନ୍ ୧୯୦୩ ଜୁଲାଇ ମାସ ପର୍ଯ୍ୟନ୍ତ ଅବଗତ ହୋଇ ନଥିଲେ। ବୈକୁଣ୍ଠଙ୍କ ଦୁଇ ଭାଇ ନୀଳକଣ୍ଠ ଓ ପ୍ରସନ୍ନ କୁମାର ନାଗପୁରରେ ଯଥାକ୍ରମେ ଆଇନ ଓ ଏଣ୍ଟ୍ରାନ୍‌ସ୍ ତଳ ଶ୍ରେଣୀରେ ପଢୁଥିଲେ। ସେଠାକାର ଜିଲ୍ଲାପାଳ ମିଷ୍ଟର କେ. ଓ୍ୱାକରଙ୍କ ସହିତ ସାକ୍ଷାତ କରିବାକୁ ଯାଇ କାଶର ପ୍ରକୋପ ହେତୁ ସାକ୍ଷାତ ନ କରି ସେ ବାହୁଡ଼ି ଆସି ଜିଲ୍ଲାପାଳଙ୍କୁ ପତ୍ର ଦ୍ୱାରା ଜଣାଇଦେଲେ। ଅସୁସ୍ଥତାର ସମ୍ବାଦ ପାଇ ତାଙ୍କର ପିତାମାତା ନାଗପୁରରେ ପହଞ୍ଚିଲେ। ସେଠାରେ ଚିକିତ୍ସା ଦ୍ୱାରା ରୋଗ କିଞ୍ଚିତ ଉପଶମ ହେଲେ ସୁଦ୍ଧା କେତେକ ଅସୁବିଧାରୁ ଛୁଟି ନେଇ ସେ ପିତାମାତାଙ୍କ ସହିତ ଗୃହକୁ ଚାଲିଆସିଲେ। ସମ୍ବଲପୁରରେ ପହଞ୍ଚିଲା ପରେ ରୋଗ ଉପଶମ ନ ହୋଇ ଦିନୁ ଦିନ ଭୟଙ୍କର ଆକାର ଧାରଣ କରି ଦୁଶ୍ଚିକିତ୍ସ୍ୟ ହୋଇ ପଡ଼ିଲା। ବୈକୁଣ୍ଠ ନିଜେ ଅନୁଭବ କଲେ ଯେ ନିଜର ଜୀବନୀ ଶକ୍ତି ଧୀରେ ଧୀରେ ହ୍ରାସ ହେଉଛି। ସେ ନିଜ ମାନସିକ ସଚେତନତା ରକ୍ଷା କରିବା ନିମିତ୍ତ ସର୍ବଦା ସଚେଷ୍ଟ ଥିଲେ ସତ କିନ୍ତୁ କରାଳକାଳ ସହିତ ସଂଗ୍ରାମ କରି କେହି କେବେ ବିଜୟ କେତନ ଉଡ଼ାଇ ପାରିନାହାନ୍ତି। ସନ୍ ୧୯୦୩ ଅକ୍ଟୋବର୧୩ ତାରିଖ ମଙ୍ଗଳବାର କାର୍ତ୍ତିକ କୃଷ୍ଣ ସପ୍ତମୀ ଦିବା ୧୧ ଟା ସମୟ ସମ୍ବଲପୁର ପକ୍ଷରେ ଏକ ଘୋର ଦୁଃସମୟ। ସେହି ଅଶୁଭ ଲଗ୍ନରେ ସମ୍ବଲପୁର ଆପଣାର ଜଣେ ସ୍ଥିର ପ୍ରତିଜ୍ଞ, ସତ୍ ସାହସୀ ଏବଂ ଯୁବକ ସନ୍ତାନକୁ ହରାଇଲା। ଯେଉଁ ବ୍ୟକ୍ତି ନିଜ ୨୭ ବର୍ଷ ଜୀବନକାଳ ମଧ୍ୟରେ ଓ ସନ୍ ୧୯୦୦ ରୁ ୧୯୦୩ ପର୍ଯ୍ୟନ୍ତ ତିନିବର୍ଷ ମାତ୍ର ସରକାରୀ କାର୍ଯ୍ୟକାଳ ମଧ୍ୟରେ ସତ୍ ସାହସ ସଙ୍ଗରେ ସୁବୁଦ୍ଧି ସଂଯୋଗ କରି ବହୁ ଅସାଧ୍ୟ ସାଧନ କରିଥିଲେ ଓ ଭାବୀ ହିତ କର୍ମର ସୂଚନା ଦେଇଥିଲେ; ସେ ଯେବେ ଦୀର୍ଘଜୀବୀ ହୋଇଥାଆନ୍ତେ ଆମ୍ଭମାନଙ୍କ କି ଅଭୂତପୂର୍ବ ହିତ ସାଧନ ହୋଇ ପାରିଥାନ୍ତା ତାହା କେବଳ କଳ୍ପନାର ବିଷୟ।

ବୈକୁଣ୍ଠଙ୍କ ଅକାଳ ବିୟୋଗରେ ଜିଲ୍ଲାର ସର୍ବତ୍ର ଗଭୀର ଶୋକର ଛାୟା ଖେଳି ଯାଇଥିଲା। ବହୁ ଆଶା ଆକାଂକ୍ଷାର ଗୋଟିଏ ସ୍ୱର୍ଣ୍ଣିମ ସ୍ତମ୍ଭ ସତେ ଯେପରି ଭାଙ୍ଗିପଡ଼ିଲା। ସମ୍ବଲ ଜନନୀର ଜନୈକ କୃତୀ ସନ୍ତାନ ଶ୍ରୀ ବାଲୁଙ୍କେଶ୍ୱର ମିଶ୍ର, ବି.ଏ.,

କଟକରେ ଏହି ମର୍ମଭେଦୀ ଶୋକବାର୍ତ୍ତା ଶ୍ରବଣ କରିବା ମାତ୍ରେ ତା ୨୨-୧୦-୧୯୦୩ ସାଲରେ ରଚନା କରିଥିବା ଆଠ ପୃଷ୍ଠା ବ୍ୟାପୀ 'ବନ୍ଧୁର ବିଳାପ' ନାମକ ପୁସ୍ତିକାର କେତେକାଂଶ ନିମ୍ନରେ ଉଦ୍ଧୃତ କରାଗଲା -

"କାନ୍ଦଇ ସମ୍ବଲପୁର କାନ୍ଦେ ମହାନଦୀ
କାନ୍ଦୁଛନ୍ତି ନରନାରୀ ଶୋକେ ନିରବଧି।
ଉଦିଛି ପ୍ରଚଣ୍ଡ ରବି ଦିଶଇ ଅନ୍ଧାର
ରାବୁଛି ମଧୁରେ ପକ୍ଷୀ କାନକୁ କୁଠାର।
ଚହଟେ ସୁମନ ଗନ୍ଧ ପ୍ରାଣକୁ ବିଷମ
ଶାରଦ ନିଶାରେ ହୁଏ ଦାବାନଳ ଭ୍ରମ।
ବହଇ ଶୀତଳ ବାୟୁ ଶୁଖାଏ ଶୋଣିତ
କେ କହି ପାରିବ କିପାଁ ଏହି ବୀପରିତ।
\+ + + + +
ସମ୍ବଲପୁର ମଥାମଣି ବଇକୁଣ୍ଠ
ଦେଖୁଁ ଦେଖୁଁ ଖୋଲିନେଲା କାଳ ଦେବଦୁଷ୍ଟ।
\+ + + + +
ଉଚ୍ଚ ଶିକ୍ଷା ଲଭିବାର ଏହି କି ହେ ଫଳ
ଏଥିପାଇଁ ଲୋଡ଼ା କି ହେ ପ୍ରାଣେ ନବବଳ ?
ରାଜ ଦରବାରେ ଲଭିଥିଲେ ଉଚ୍ଚାସନ
ନୋହିଥାନ୍ତା ଉଚ୍ଚାସନ ଥାଆନ୍ତା ଜୀବନ।
ଦେଶ୍ ଭାଇ ଗଣେ କିଏ ଦେଖାଇବ ପଥ
କିଏ ଦେଶ ହିତ ଅର୍ଥେ ଚିନ୍ତିବ ସତତ ?
ଜାତୀୟ ଉନ୍ନତି ଯଜ୍ଞେ ଆହୁରି ଛଳରେ
ଅର୍ପିଲାକି ମାତୃଭୂମି ତା ଜ୍ୟେଷ୍ଠ କୁମରେ।
\+ + + + +
ମୋ ଜନମ ଭୂମି ! ଆହା ସେ ଚିର ଦୁଃଖିନୀ ।
କେଉଁ ପାପ ଫଳେ ? ପାପ ଛେଦ ଚକ୍ରପାଣି ।।
ଦେଲ ଯାହା ନେଲ ତାହା ଏଥକୁ କିପାଇଁ ।

ମହାଦାନୀ ବୋଲାଉଛ ଆହେ ଭାବଗ୍ରାହୀ ।।
ଦୁଃଖ ଅନୁରୂପେ ସୁଖ ଦେଉଥାନ୍ତ. ଯେବେ ।
ତବ ଦାତାପଣ ସିନା ଶୋଭା ପାନ୍ତା ତେବେ ।।

ବଙ୍ଗ ପ୍ରଦେଶର ଛୋଟ ଲାଟ ସାର୍ ଏଣ୍ଡ୍ରୁ ଫ୍ରେଜର ଯେ କି ପୂର୍ବରୁ ମଧ ପ୍ରଦେଶର ଚିଫ୍ କମିଶନର ଥିଲେ ଓ ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରବର୍ତ୍ତନ କର୍ବେ ପ୍ରବଳ ଉଦ୍ୟମ ମଧ କରିଥିଲେ, ବୈକୁଣ୍ଠନାଥଙ୍କ ମୃତ୍ୟୁରେ ସେ ସାତିଶୟ ବ୍ୟଥିତ ହୋଇ ନିମ୍ନ ସାନ୍ତ୍ୱନା ପତ୍ର ତାଙ୍କ ପିତାଙ୍କ ପାଖକୁ ଲେଖିଥିଲେ -

Belvedere,
Calcutta
10th December, 1903

My dear friend,

The letter in which you convey to me the sad news of the death of your son - Baikunth Nath has caused me much sorrow. I sympathise very deeply with you in this sad bereavement. I can only hope that you will bravely and loyally submit to the will of God.

I am, yours truly,

Dasarathu Pijari, Esq — Sd. A.H.L. Fraser

ପାଶ୍ଚାତ୍ୟ ଶିକ୍ଷା ପଦ୍ଧତିର ଅନୁଗାମୀ ହୋଇ ସରକାରୀ ଉଚ୍ଚ ଅଫିସର ହେବା ବୈକୁଣ୍ଠନାଥଙ୍କ ମୁଖ୍ୟ ଲକ୍ଷ୍ୟ ଥିବା ତାଙ୍କ କାର୍ଯ୍ୟ କଳାପରୁ ପରିଲକ୍ଷିତ ହୋଇ ନଥିଲା। ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତି ଜୀବନର ଶ୍ରେଷ୍ଠତମ ବିକାଶ ବୋଲି ତାଙ୍କ କଳ୍ପନା ନଥିଲା। ତାଙ୍କ ଭଳି ସ୍ୱଦେଶପ୍ରେମୀ, ସ୍ୱାଧୀନଚେତା ଓ ସ୍ଥିରପ୍ରଜ୍ଞ ବ୍ୟକ୍ତି ଅଧିକ ଦିନ ସରକାରୀ କର୍ମରେ ରହି ପାରି ନଥାନ୍ତେ. ଦେଶ ବି ତାଙ୍କ ପାଖରୁ ବହୁତ କିଛି ଆଶା କରିଥିଲା। କିନ୍ତୁ

ନିୟତି ଅଲଂଘନୀୟ। ଭୀଷ୍ମସମ ଅଟଳ କର୍ମବୀର ବୈକୁଣ୍ଠନାଥ ୧୯୦୩ ଅକ୍ଟୋବର ୧୩ ତାରିଖ ଦିବା ୧୨ ଟାରେ ଦେହତ୍ୟାଗ କଲେ। ତାଙ୍କ ତିରୋଧାନରେ ଉତ୍କଳ ଜନନୀ ଯେଉଁ ରତ୍ନ କାଳ ସମୁଦ୍ରରେ ବିସର୍ଜନ ଦେଲେ ସେଭଳି ରତ୍ନ ଲାଭ ସଚରାଚର ବିରଳ।

ଏ ଅଞ୍ଚଳରେ ଶିକ୍ଷା ପ୍ରସାରିତ ହେବା ପ୍ରାରମ୍ଭରେ ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଶାର ସ୍ୱାତନ୍ତ୍ର୍ୟ ରକ୍ଷା ନିମନ୍ତେ ଯେଉଁ କତିପୟ ମତିମାନ ଦେଶପ୍ରାଣ ବ୍ୟକ୍ତି କାୟମନୋବାକ୍ୟରେ ଆପ୍ରାଣ ଉଦ୍ୟମ ଚଳାଇଥିଲେ ୰ ବୈକୁଣ୍ଠନାଥ ସେମାନଙ୍କ ମଧ୍ୟରେ ଏକ ମହତ୍ତର ସ୍ଥାନର ଅଧିକାରୀ। ତତ୍‌କାଳୀନ ଭାଷା ସଂକଟର ନୈରାଶ୍ୟମୟ ପରିସ୍ଥିତିରେ ତାଙ୍କ ଜାତ୍ୟାଭିମାନ, ଦେଶାତ୍ମବୋଧ ଓ ଅଦମ୍ୟ ଉତ୍ସାହ ପରିଲକ୍ଷିତ ହୋଇଥିଲା। ସମ୍ପ୍ରତି ରାଜ୍ୟର ଅନ୍ଦିକନ୍ଦିରେ ଶିକ୍ଷାର ବ୍ୟାପକ ସ୍ତରରେ ବିକାଶ ହେଲେ ବି ଦେଶ ଓ ଜାତି ପ୍ରତି ସେହି ପରିମାଣରେ ମମତ୍ୱ ବିରଳ। ସୀମିତ କାଳ ଭିତରେ ସରକାରୀ ଉଚ୍ଚ ପଦାରୂଢ଼ ଥାଇ ବି ବୈକୁଣ୍ଠନାଥ ଦଶ ଓ ଦେଶ ହିତାର୍ଥେ ଅସାଧ୍ୟ କର୍ମ ସାଧନ କରି ପାରିଥିବା କଥା ଭାବିଲେ ବାସ୍ତବିକ ବିସ୍ମିତ ହେବାକୁ ପଡ଼େ। ଧନ୍ୟ ସେହି କର୍ମବୀରଙ୍କ ଅସୀମ ନୈତିକ ସାହସ ଧନ୍ୟ ତାଙ୍କର ଅପୂର୍ବ ଦେଶାତ୍ମତା। ଯେ ପର୍ଯ୍ୟନ୍ତ ଓଡ଼ିଶା ରହିଥିବ ଓ ଓଡ଼ିଆ ଜାତି ବଞ୍ଚିଥିବ ସେତେଦିନ ପର୍ଯ୍ୟନ୍ତ ବୈକୁଣ୍ଠନାଥ ଓ ତାଙ୍କ ସହକର୍ମୀଗଣ ଅବିସ୍ମରଣୀୟ ହୋଇ ରହିବେ। ଦେହୀର ଦେହକୁ କାଳ ଝିଙ୍କି ନେଇପାରେ କିନ୍ତୁ ତାର କୃତିକୁ ସ୍ପର୍ଶ କରି ପାରେନାହିଁ। କଥାରେ ଅଛି - 'କୀର୍ତ୍ତିର୍ଯସ୍ୟ ସ ଜୀବତି'।



# ବଂଶାବଳୀ

ବିଷ୍ଣ ପୂଜାରୀ ହିଁ ଏ ବଂଶର ଆଦିପୁରୁଷ। ଯାଙ୍କ ପିତାଙ୍କ ନାମ ଓ ସଂଜ୍ଞାର ଉଲ୍ଲେଖ କୌଣସିଠାରେ ନାହିଁ। ଏହି ବଂଶର ବୟସ୍କ ବ୍ୟକ୍ତିଗଣ କହନ୍ତି ଯେ ଯାଙ୍କ ପୂର୍ବ ପୁରୁଷ ଓ ପାଢ଼ୀ ପରିବାର ଭିତରେ ବହୁଦିନ ପର୍ଯ୍ୟନ୍ତ ମୃତ ଓ ଜାତ ଶୌଚାଦିର ସମ୍ପର୍କ ଥିଲା। ସମ୍ବଲପୁର ସହରର କୁଞ୍ଜେଲପଢ଼ାସ୍ଥିତ ହୋତାପଢ଼ା ମନ୍ଦିରର ସେବକ ହେଲେ ବିଷ୍ଣୁ ପୂଜାରୀ।

ବିଷ୍ଣୁ ପୂଜାରୀଙ୍କ ପୁତ୍ର ଦାମୋଦରଙ୍କ ପାଞ୍ଚ ପୁତ୍ର ରାମଚନ୍ଦ୍ରଙ୍କ ବ୍ୟତୀତ ଅନ୍ୟ ଚାରି ପୁତ୍ର ପୁତ୍ରବନ୍ତ ଥିଲେ। ଜ୍ୟେଷ୍ଠ ପୁତ୍ର ବଳଭଦ୍ରଙ୍କ ଦୁଇ ପୁତ୍ର ମଧ୍ୟରେ କନିଷ୍ଠ ପୁତ୍ର କୃଷ୍ଣଙ୍କୁ ବିଭା ବିଶିଙ୍କ ଦୁହିତା ବୈଦେହୀ ବିବାହ କରିଥିଲେ। ସେ କନିଷ୍ଠ ପୁତ୍ର ସୁରାନନ୍ଦଙ୍କୁ ଜନ୍ମ ଦେବା ପରେ ଚକ୍ଷୁ ନଷ୍ଟ କଲେ। ବୈକୁଣ୍ଠନାଥ ଯାଙ୍କ ପାଖରୁ ପୂର୍ବ କାଳର କଥା ଶୁଣୁଥିଲେ। ଯାଙ୍କ ଜ୍ୟେଷ୍ଠ ପୁତ୍ର କମଳ ଲୋଚନ ବିଶି ପରିବାରର ପୋଷ୍ୟ ପୁତ୍ର ହେଲେ। କମଳଲୋଚନ ପୂଜାରୀଙ୍କ ପାଞ୍ଚ ପୁତ୍ର ଥିଲେ। ଜ୍ୟେଷ୍ଠ ପୁତ୍ର ତ୍ରିବିକ୍ରମ ଏ ଜିଲ୍ଲାର କୃଷି ପାଠରେ ପ୍ରଥମ ଗ୍ରାଜୁଏଟ ଓ ଡେ଼ପୁଟି ମାଜିଷ୍ଟ୍ରେଟ। ଦ୍ୱିତୀୟ ପୁତ୍ର ରାୟ ବାହାଦୂର ସନାତନ ଏ ଜିଲ୍ଲାର ପ୍ରଥମ ଏଲ୍.ଏମ୍.ଏସ୍.। ୩ୟ ପୁତ୍ର ମୀନ କେତନ ପାଟନା ଷ୍ଟେଟରେ ଜଣେ ଖ୍ୟାତ ପୋଲିସ ସର୍କଲ ଇନ୍‌ସପେକ୍ଟର ଥିଲେ। ୪ର୍ଥ ପୁତ୍ର ଅଚ୍ୟୁତାନନ୍ଦ ଏ ଜିଲ୍ଲାର ପ୍ରଥମ ଇଞ୍ଜିନିୟର। କନିଷ୍ଠ ପୁତ୍ର ସଚ୍ଚିଦାନନ୍ଦ ଏ ଜିଲ୍ଲାବାସୀ ମଧ୍ୟରେ ପ୍ରଥମ ଜିଲ୍ଲା କଲେକ୍ଟର ଓ କୃଷି ବିଭାଗୀୟ ଡ଼ାଇରେକ୍ଟର ଓ ପରେ ଆଇ.ଏ.ଏସ୍ ପାଇବାକୁ ଉନ୍ନୀତ ହୋଇଥିଲେ। ଦାମୋଦରଙ୍କ ଅପର ପୁତ୍ର ହେଉଛନ୍ତି ଦାଶରଥି ଓ ପରମେଶ୍ୱର। ପରମେଶ୍ୱରଙ୍କ ଚାରି ସନ୍ତାନ ମଧ୍ୟରେ ଜ୍ୟେଷ୍ଠ ପୁତ୍ର ନଟବର ବୈକୁଣ୍ଠନାଥଙ୍କ ପ୍ରେରଣାରେ ଜଣେ ବିଶିଷ୍ଟ ଫଟୋଗ୍ରାଫର ହୋଇ ପାରିଥିଲେ ଓ ସେ ଜଣେ ଦ୍ୱିତୀୟ ଶ୍ରେଣୀର ଆର୍ଟିସ ବି ଥିଲେ। ଆଲୋଚ୍ୟ ବୈକୁଣ୍ଠନାଥଙ୍କ ଜନ୍ମଦାତା ହେଉଛନ୍ତି ୵ ରାୟ ସାହେବ ଦାଶରଥି ପୂଜାରୀ। ଦାମୋଦରଙ୍କ ଏକ ପୁତ୍ର ନାରାୟଣଙ୍କ କନିଷ୍ଠ ପୁତ୍ର ମଦନମୋହନ। ସେ ବୈକୁଣ୍ଠନାଥଙ୍କ ଅଭିଭାବକ ହୋଇଥିଲେ। ନାରାୟଣଙ୍କ ଜ୍ୟେଷ୍ଠ ପୁତ୍ର ସଂକର୍ଷଣଙ୍କ ତିନି ପୁତ୍ର ମଧ୍ୟରେ ଜ୍ୟେଷ୍ଠ ମୁକୁନ୍ଦ ପ୍ରସାଦ ଅତି ବୁଦ୍ଧିଶାଳୀ ଥିଲେ। ତାଙ୍କ ପ୍ରଖର ଉଦ୍‌ଭାବନା ଶକ୍ତି ଥିଲା। ବଳଭଦ୍ରଙ୍କ ଭ୍ରାତା ଜଗନ୍ନାଥଙ୍କ ଚାରିପୁତ୍ର ମଧ୍ୟରୁ କନିଷ୍ଠ ଗୋପାଳଙ୍କ ପୁତ୍ର ଶ୍ୟାମସୁନ୍ଦର ବୈକୁଣ୍ଠନାଥଙ୍କ ପ୍ରେରଣାରେ ବମ୍ବେରେ ୬ ବର୍ଷକାଳ ରହି ଚିତ୍ରକଳା ଶିକ୍ଷା କରି ଯଶସ୍ୱୀ ହୋଇଥିଲେ।

ଦାଶରଥିଙ୍କ ସନ୍ତାନ ମଧ୍ୟରୁ ୨ ଯ ପୁତ୍ର ଶ୍ରୀକଣ୍ଠ ଓ କନିଷ୍ଠା କନ୍ୟା ବିମଳା ଶୈଶବାବସ୍ଥାରେ ପ୍ରାଣ ହରାଇଥିଲେ। ଜ୍ୟେଷ୍ଠା କନ୍ୟା ରୁକ୍ମିଣୀ ହୋଇଥିଲେ ସମ୍ବଲପୁରର ଅକ୍ଷୟ ତାରକା ଚନ୍ଦ୍ରଶେଖର ବେହେରାଙ୍କ ସହଧର୍ମିଣୀ। ଯାଙ୍କ ପରେ ବୈକୁଣ୍ଠନାଥଙ୍କ ଜନ୍ମ। ଦାଶରଥିଙ୍କ ଚତୁର୍ଥ ସନ୍ତାନ ନୀଳକଣ୍ଠ ଜଣେ ସୁବକ୍ତା, ସୁସାହିତ୍ୟିକ ଓ ସତ୍‌ସଙ୍ଗ ପ୍ରେମୀ ଥିଲେ ଓ ୧୦ ମାସ ମାତ୍ର ଓକିଲାତି କରି ୧୯୦୫ ଖ୍ରୀ.ଅ.ରେ ଦେହତ୍ୟାଗ କଲେ। ଯାଙ୍କ ଏକମାତ୍ର କନ୍ୟା ସୁଶୀଳା। ନୀଳକଣ୍ଠଙ୍କ ଭଗ୍ନୀ ୰ ଶ୍ରୀମତୀ ଥିଲେ ଗୀତାଭକ୍ତ ସମାଜର ଏକକାଳୀନ ସଭାପତି ଓ ଜିଲ୍ଲାର ଅନ୍ୟତମ ପ୍ରଥମ ଏଲ୍.ଏମ୍.ଏସ୍. ୰ ରାମଚନ୍ଦ୍ର ମିଶ୍ରଙ୍କ ପ୍ରଥମା ପତ୍ନୀ। ୰ ଶ୍ରୀମତୀଙ୍କ ଭାଇ ପ୍ରସନ୍ନ କୁମାର ଇନ୍ସପେକ୍ଟର ଅଫ୍ ରେଜିଷ୍ଟ୍ରେସନ ହୋଇ ଅବସର ନେବା କରେ ସରଳ ଧାର୍ମିକ ଜୀବନ ପାଳନ କରୁଛନ୍ତି। ସେ କଷ୍ଟ ସହିଷ୍ଣୁ ଓ ଆତ୍ମ ନିର୍ଭରଶୀଳ। ନିଜ ଭାଇ ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଦ୍ୱାରା ପ୍ରକାଶିତ 'ସୁନାବୋହୂ' ଉପନ୍ୟାସ ଖଣ୍ଡିକ ପୁନଃମୁଦ୍ରଣ କରାଇଛନ୍ତି ଓ ଇଂରାଜୀ ଭାଷାରେ 'ବୈକୁଣ୍ଠ ଓ ତାଙ୍କ ପତ୍ରାବଳୀ' ଓ 'ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଜୀବନୀ' ପୁସ୍ତକ ଦ୍ୱୟ ପ୍ରକାଶ କରିଛନ୍ତି। ଯାଙ୍କ ବଡ଼ ପୁଅ ମୂରଲୀଧର ଜଣେ ଏଡ଼୍‌ଭୋକେଟ। ପ୍ରସନ୍ନଙ୍କ ଭାଇ ବନମାଳୀ ବଳିଷ୍ଠ ଓ ସାହସୀ। ସେ ଇଷ୍ଟର୍ଣ୍ଣ ଷ୍ଟେଟ ଏଜେନ୍‌ସିର ଗଭର୍ଣ୍ଣର ଜେନେରାଲଙ୍କ ଏଜେଣ୍ଟଙ୍କ ଷ୍ଟେନୋଗ୍ରାଫର କାମରୁ ଅବସର ନେଇ ବଙ୍ଗର କୁଚବିହାରର ମୁଖ୍ୟ ସଚୀବଙ୍କ କନ୍‌ଫିଡ଼େନ୍‌ସିଆଲ୍ ଆସିଷ୍ଟାଣ୍ଟ ଥିଲେ। ଏବେ ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀଙ୍କ ଦ୍ୱାରା ପ୍ରତିଷ୍ଠିତ ବଉଁଶରୀର କଲ୍ୟାଣ ଆଶ୍ରମର ସେ ତତ୍ତ୍ୱାବଧାରକ ଓ ଧର୍ମ କର୍ମରେ ରତ। ଯାଙ୍କ ୪ ପୁତ୍ର ହେଉଛନ୍ତି ବଂଶୀଧର, ଚକ୍ରଧର, ବିମ୍ବାଧର ଓ ବେଣୁଧର। ବଡ଼ ପୁଅ ଡ଼େପୁଟି କଲେକ୍ଟର ହୋଇ ଅବସର ନେବା ପରେ ଧର୍ମ ଚର୍ଚ୍ଚା ଓ ଜମିବାଡ଼ି ଦେଖରେଖ କରନ୍ତି। ୨ୟ ପୁତ୍ର ଏବେ ସ୍ୱାଧୀନ ଜୀବନଯାପନ କରନ୍ତି। ୩ୟ ପୁତ୍ର ସ୍ୱାସ୍ଥ୍ୟ ବିଭାଗୀୟ ଏଡ଼ିସନେଲ ଡ଼ାଇରେକ୍ଟର ପଦରୁ ଅବସର ନେଇଛନ୍ତି। ସେ ଏବେ ବିଦେଶ ଫେରନ୍ତା ଡ଼ାକ୍ତର। ୪ର୍ଥ ପୁତ୍ର କୋପରେଟିଭ ସୋସାଇଟିର ସିନୟର ଇନ୍ସପେକ୍‌ଟର।

ଦାଶରଥିଙ୍କ ଷଷ୍ଠ ପୁତ୍ର ଥିଲେ ଋଷି ପ୍ରତିମ ଡ଼ାକ୍ତର ଜନାର୍ଦ୍ଦନ ପୂଜାରୀ। ସେଥିଲେ ବହୁ ସତ୍ ଗୁଣ ଯୁକ୍ତ, ରୋଗୀ ସେବାଠାରୁ ଆରମ୍ଭ କରି ପୁରାଣ ଓ ଶାସ୍ତ୍ର ପଠନ ଏବଂ ବ୍ୟାଖ୍ୟା ଦ୍ୱାରା ଲୋକଙ୍କୁ ସତ୍‌ମାର୍ଗରେ ପରିଚାଳିତ କରୁଥିଲେ। ଜଣେ ସୁସାହିତ୍ୟିକ ଭାବରେ ଲୋକ ଚରିତ୍ର ଗଠନ ପାଇଁ ନାଟକ, ଉପନ୍ୟାସ ଓ ପଦ୍ୟ ରଚନା କରିଥିଲେ। ଅନ୍ୟ ଭାଷାରୁ ଓଡ଼ିଆରେ ନାଟକ ଅନୁବାଦ କରି ସେ ଲୋକ ଶିକ୍ଷା ପାଇଁ ମଞ୍ଚସ୍ଥ କରୁଥିଲେ। ସେ ସୁଅଭିନେତା ସଙ୍ଗେ ସଙ୍ଗେ ଦକ୍ଷ ନିର୍ଦ୍ଦେଶକ ଥିଲେ। ବୁଦ୍ଧିମାନ ମୁକୁନ୍ଦ ପୂଜାରୀ

ବାଲ୍ୟକାଳୁ ରଙ୍ଗମଞ୍ଚ ସାଜ କରିବା କୌଶଳ ତାଙ୍କୁ ଶିକ୍ଷା ଦେଇଥିଲେ। ଚିତ୍ରକଳାରେ ମଧ୍ଧ ସେ ନିପୁଣ ଥିଲେ। ସେ ଥିଲେ ବିନୟୀ, ମିଷ୍ଟଭାଷୀ, ସତ୍ୟବ୍ରତ, ନିରହଂକାରୀ ଓ ନିର୍ଲୋଭ। ଯାଙ୍କ ଜ୍ୟେଷ୍ଠ ପୁତ୍ର ସୁରେନ୍ଦ୍ର ମୋହନ ଓରଫ ରାଜାରାମ ବୁର୍ଲା ପାଓ୍ୱାର ହାଉସର ଫୋରମ୍ୟାନ ଅଟନ୍ତି ଓ କନିଷ୍ଠ ପୁତ୍ର ଯତୀନ୍ଦ୍ର ମୋହନ ଏମ୍.ବି.ବି.ଏସ୍. ଉପାଧିଧାରୀ। ଦାଶରଥିଙ୍କ କନିଷ୍ଠ ପୁତ୍ର ଗୋକୁଳଚନ୍ଦ୍ର ସ୍ୱାଧୀନଚେତା। ସେ ବିଶ୍ୱବିଦ୍ୟାଳୟରୁ ଗ୍ରାଜୁଏଟ ହେବା ପରେ ଚାକିରୀ ପ୍ରୟାସୀ ନ ହୋଇ ଅସହଯୋଗ ଓ ଦେଶମିଶ୍ରଣ ଆନ୍ଦୋଳନରେ ଜଣେ ନିଷ୍ଠାପର କର୍ମୀ ହେଲେ। ସେ ଲକ୍ଷ୍ୟ ପଟୁଥିବାରୁ ନିର୍ଭୀକ ଚିତ୍ତରେ ଭୂମି ଉପରେ ଛିଡ଼ା ହୋଇ ବାଘ ଶିକାର କରୁଥିଲେ। ବୁଦ୍ଧିମାନ, ବଳିଷ୍ଠ ଓ ସାହସୀ ଥିବାରୁ ଏକାଧିକବାର ବାଘ ସହ ଲଢ଼ି ସେ ଜୟୀ ହୋଇଛନ୍ତି। ସେ ଜଣେ ଭଲ ଅଭିନେତା, ଚିତ୍ରକର ଓ ଫୁଟବଲ ଖେଳାଳୀ। ଯାଙ୍କ କନ୍ୟା ମନୋରମାଙ୍କ ପୁତ୍ର ରାଜେନ୍ଦ୍ର ସୂପକାର ଆମେରିକାରେ ଇଞ୍ଜିନିୟର କାମ କରନ୍ତି। ଗୋକୁଳଚନ୍ଦ୍ରଙ୍କ ପୁତ୍ର ରବୀନ୍ଦ୍ରନାଥ ଜଣେ ଗ୍ରାଜୁଏଟ। ସେ କମିଶନର ଅଫିସରେ ଜଣେ ଏସିଷ୍ଟେଣ୍ଟ।

ଜଗନ୍ନାଥଙ୍କ ଜ୍ୟେଷ୍ଠ ପୁତ୍ର କେଶବଙ୍କ ଦିଓଟି ପୁତ୍ର। ଜ୍ୟେଷ୍ଠ ପୁତ୍ର ସତ୍ୟବାଦୀ ଅପୁତ୍ରିକ ଓ କନିଷ୍ଠ ପୁତ୍ର ବ୍ରଜମୋହନଙ୍କ ପୁତ୍ର ଗଣେଶ ପ୍ରସାଦ ନିଜ ମାତୁଳ ଶୁକଦେବ ପଣ୍ଡାଙ୍କ ଅକୁଣ୍ଠ ସାହାଯ୍ୟରେ ହାଇସ୍କୁଲ ଶିକ୍ଷା ସାରି ଉଇଭିଙ୍ଗ ଶିକ୍ଷାକଲେ। ସେ ଅଧ୍ୟବସାୟୀ ଓ ବୁଦ୍ଧିମାନ ଥିଲେ। ବିହାର ଓ ଓଡ଼ିଶା ପ୍ରଦେଶରେ ହସ୍ତତନ୍ତ ଶିଳ୍ପ ସୁପରିନ୍‌ଟେଣ୍ଡେଣ୍ଟ କାର୍ଯ୍ୟ କରି ଓଡ଼ିଶା ପ୍ରଦେଶ ଗଠନ ପରେ ପାଟନା ଛାଡ଼ି କଟକକୁ ଆସିଲେ। ସେ ଓଡ଼ିଶା ସରକାରଙ୍କ ଶିଳ୍ପ ବିଭାଗରେ ଏସିଷ୍ଟେଣ୍ଟ ଡ଼ାଇରେକ୍ଟର ପଦରୁ ଅବସର ଗ୍ରହଣ କରିଥିଲେ।

ପ୍ରସନ୍ନ କୁମାରଙ୍କ ଦ୍ୱିତୀୟ ପୁତ୍ର ସାରଙ୍ଗଧର ହୋମିଓପେଥି ପାଶ କରି ଏଠାରେ ଦୋକାନ ଖୋଲି ଯେଉଁ କେତେ ଦିନ ଚିକିତ୍ସା କଲେ ଆସ୍ତେ ଆସ୍ତେ ଖ୍ୟାତି ବଢୁଥିଲା। ତାହାସ୍ଥଗିତ ନ ରଖି ଜାରି ରଖିଥିଲେ ହୋମିଓ ଚିକିତ୍ସାରେ ଉନ୍ନତି କରିବା ସମ୍ଭାବନା ଥିଲା।

କେଶବଙ୍କ ତିନି ଭ୍ରାତାଙ୍କ ମଧ୍ୟରୁ ମାଧବ ନିଜ ପିତୃବ୍ୟ ରାମଚନ୍ଦ୍ରଙ୍କ ପୋଷ୍ୟ ପୁତ୍ର ହେଲେ। ତାଙ୍କ କନ୍ୟାଙ୍କ ନାମ ଗୌରୀ। ମାଧବଙ୍କ ଭ୍ରାତା ଗୋବିନ୍ଦ ଥିଲେ ଅପୁତ୍ରିକ ଓ ଅନ୍ୟ ଭ୍ରାତା ଗୋପାଳ ପ୍ରଥମେ ଏକ ଦୋକାନ ଖୋଲିଥିଲେ ଓ ପରେ ବର୍ମାସେଲ କିରୋସିନୀ ତେଲ କମ୍ପାନୀର ଏଜେଣ୍ଟ ହେଲେ। ଯାଙ୍କ ପୁତ୍ର ଶ୍ୟାମସୁନ୍ଦରଙ୍କ ପୁତ୍ର ରମାକାନ୍ତ ନିଜ ଶ୍ୟାଳକ ସମ୍ପର୍କୀୟ ପ୍ରଭାକର ସୂପକାରଙ୍କ ଆମ ମୁକ୍ତାର ଥିଲେ ଓ ନିଜେ ଜମିଜାଗା ଦେଖରେଖ କରୁଥିଲେ।

କୃଷ୍ଣଙ୍କ ଅଗ୍ରଜ ମଧୁ ଅପୁତ୍ରିକ ଥିଲେ। କୃଷ୍ଣଙ୍କ ଦ୍ୱିତୀୟ ପୁତ୍ର ପଦ୍ମଲୋଚନ ଜିଲ୍ଲା ଅଫିସରେ ରେକର୍ଡ଼ କିପର ଥିଲେ। ଯାଙ୍କ ଜ୍ୟେଷ୍ଠ ପୁତ୍ର କୁଞ୍ଜବିହାରୀ ସବ୍‌ଜଜ୍‌ଙ୍କ ଷ୍ଟେନୋଗ୍ରାଫର ଥିଲେ। ଦ୍ୱିତୀୟ ପୁତ୍ର ବିପିନବିହାରୀ ସବ୍ ରେଜିଷ୍ଟ୍ରାର ଥିଲେ ଓ ତୃତୀୟ ପୁତ୍ର ବିନୋଦବିହାରୀ ଜିଲ୍ଲା ବୋର୍ଡ଼ର ଟ୍ରେସର ଥିଲେ। ପଦ୍ମଲୋଚନଙ୍କ ଅନୁଜ ପ୍ରଦ୍ୟୁମ୍ନ ଥିଲେ ଜଣେ ଦୋକାନୀ। ଯାଙ୍କ ପୁତ୍ର ଗୋପକହ୍ନାଇ ସରାଇପାଲିରେ ରହି ଜମିଜାଗା ଦେଖରେଖ କରନ୍ତି। ଯାଙ୍କ ଅନୁଜ କମ୍ପାଉଣ୍ଡର ଗୌରଚନ୍ଦ୍ର ପ୍ରଦ୍ୟୁମ୍ନଙ୍କ ଭ୍ରାତା ସୁରାନନ୍ଦ ଥିଲେ ଜଣେ ବିଖ୍ୟାତ ମୃଣ୍ମୟ ଶିଳ୍ପୀ ଓ ଗଣିତଜ୍ଞ। ତାହାଙ୍କ ଜ୍ୟେଷ୍ଠ ପୁତ୍ର ବଂଶୀବଟଙ୍କ ଦେହାନ୍ତ ହୋଇଛି ଓ କନିଷ୍ଠ ପୁତ୍ର କଳ୍ପବଟ ଏବେ ଏଠାକାର ବଡ଼ ପୋଷ୍ଟ ଅଫିସରେ ପୋଷ୍ଟମାଷ୍ଟର ଅଛନ୍ତି।

ନଟବରଙ୍କ ପୁତ୍ର ବସନ୍ତ କୁମାର ରାଉରକେଲାର ଇସ୍ପାତ କମ୍ପାନୀରେ ଏସିଷ୍ଟେଣ୍ଟ ଷ୍ଟୋର କିପର। ଯାଙ୍କ ପିତୃବ୍ୟ ୰ ଗଙ୍ଗାଧର ଥିଲେ ଅପୁତ୍ରିକ ଓ ଅନ୍ୟ ପିତୃବ୍ୟ ମିତ୍ରଭାନୁ ଓରଫ ସୁରୁବାବୁ ସ୍ୱପୁତ୍ର ମଣିଶଙ୍କରଙ୍କ ସହ ବସ୍ତ୍ର ବ୍ୟବସାୟ ପରିଚାଳନା କରନ୍ତି।

ମୁକୁନ୍ଦଙ୍କ ଜ୍ୟେଷ୍ଠ ପୁତ୍ର ୰ ବୃନ୍ଦାବନ ବିହାରୀ ଓରଫ ବନ ପିତାଙ୍କ ଉଦ୍ଭାବନ ଶକ୍ତିର ଅଧିକାରୀ ଥିଲେ। ତାଙ୍କ ଭ୍ରାତା ୰ ଜୟବିହାରୀ ତାଙ୍କ ଶରୀରର ଗଠନ ନିଜ ପିତାଙ୍କ ଶରୀରର ଗଠନ ପରି ଦୃଢ଼ ଥିଲା। ବୃନ୍ଦାବନ ବିହାରୀଙ୍କ ଏକ ପିତୃବ୍ୟ ୰ ସଚ୍ଚିଦାନନ୍ଦଙ୍କ କନ୍ୟାର ନାମ ଲକ୍ଷ୍ମୀ ଓ ଅନ୍ୟ ପିତୃବ୍ୟ ୰ ଅଚ୍ୟୁତାନନ୍ଦଙ୍କ ପୁତ୍ରର ନାମ ଗୋବର୍ଦ୍ଧନ ଓରଫ ଭାଲୁ ମତ୍ସ୍ୟ ଚାଷ ବିଭାଗ ଅଧୀନରେ କାମ କରନ୍ତି।

ମଦନ ମୋହନଙ୍କ ଜ୍ୟେଷ୍ଠ ପୁତ୍ର ରାଜୀବ ଲୋଚନ ସ୍ଥାନୀୟ କମିଶନର ଅଫିସରେ ସୁପରିଣ୍ଟେଣ୍ଡେଣ୍ଟ କାର୍ଯ୍ୟ କରି ଅବସର ନେଇଛନ୍ତି। ଯାଙ୍କ ଜ୍ୟେଷ୍ଠ ପୁତ୍ର ରାହାସବିହାରୀ ବ୍ରଜରାଜନଗର କାଗଜ ଫେକ୍ଟ୍ରୀର ମେନେଜର ଓ ଅନ୍ୟ ପୁତ୍ର ନିକୁଞ୍ଜ ବିହାରୀ ଆଇନ କଲେଜର ପୁସ୍ତକାଗାରର ରକ୍ଷକ। ରାଜୀବଙ୍କ ଅନୁଜ ୰ ବିଶ୍ୱକେଶନ ଜିଲ୍ଲା ଅଫିସର ୟୁ.ଡ଼ି. କ୍ଲାର୍କ ଥିଲେ। ତହିଁ ପୂର୍ବରୁ ସେ ପି.ଏ. ଅଫିସରେ କାର୍ଯ୍ୟ କରୁଥିଲେ। ଯାଙ୍କ ଜ୍ୟେଷ୍ଠ ପୁତ୍ର ଗଗନବିହାରୀ ବୁର୍ଲାରେ ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର ଅଫିସର ଜେନରେସନ ସାର୍କଲର ହେଡ଼ ଏସିଷ୍ଟେଣ୍ଟ ଏବଂ କନିଷ୍ଠ ପୁତ୍ର ଚିନ୍ତାମଣି ବେଲପାହାଡ଼ ରିଫ୍ରେକ୍ଟାରୀ ଅଫିସରେ କାର୍ଯ୍ୟ କରନ୍ତି।

# ପରିଶିଷ୍ଟ

ସ୍ଥାନୀୟ ପଟ୍ଟନାୟକ ପଡ଼ା ଏମ୍.ଇ. ସ୍କୁଲର ପ୍ରଧାନ ଶିକ୍ଷକ ପୁରୀ ନିବାସୀ ଶ୍ରୀଯୁକ୍ତ ପୂର୍ଣ୍ଣଚନ୍ଦ୍ର ଦାସ "ହୀରାଖଣ୍ଡ" ମାସିକ ପତ୍ରିକାରେ ସମ୍ୱତ ୧୯୭୬ ଇଂରେଜୀ ୧୯୨୦ ସାଲରେ ଲେଖିଥିଲେ -

"ଯେଉଁ ଜଟିଳ ବିଷୟ ସାଧନ ନିମନ୍ତେ ଆମ ଉତ୍କଳର ଦେଶହିତୈଷୀ ମାନଙ୍କର କ୍ଷମତା ବହିର୍ଭୂତ ହୋଇଅଛି, ତାହା ବୈକୁଣ୍ଠନାଥଙ୍କର ଆନ୍ତରିକ ସ୍ୱାର୍ଥତ୍ୟାଗ ଦ୍ୱାରା ସୁସାଧ ହୋଇପାରି ସହସ୍ର ସହସ୍ର ଓଡ଼ିଆ ଭାଇଙ୍କର ଭାତୃମିଳନ ସଙ୍ଗଠନର ସହାୟ ହୋଇ ପାରିଥିଲା ଯାହା ସାଧନ କରିବାକୁ ଶହ ଶହ ଓଡ଼ିଆ ଭାଇଙ୍କ ତୁଣ୍ଡ ମୁଣ୍ଡ ଛିଣ୍ଡି ଉଡ଼ିଗଲାଣି ସେହି ଅସାଧ କର୍ମ ବୈକୁଣ୍ଠନାଥଙ୍କ ସରକାରୀ କର୍ମରେ ଯୋଗ ଦେଇ ସୁଦ୍ଧା ସାଧନ କରିପାରିଥିଲେ। ଧନ୍ୟ ସେ କର୍ମବୀରଙ୍କ ସାହସ। ଦିବସବ୍ୟାପୀ ସରକାରୀ କର୍ମରେ ନିଯୁକ୍ତ ରହି ରାତ୍ରିକାଳ ପ୍ରବେଶ ମାତ୍ରକେ ଅଶ୍ୱୋପରି ଆରୋହଣ କରି ବୈକୁଣ୍ଠନାଥ ରାତ୍ରିଯାପନ କରୁଥିଲେ। ଗ୍ରାମେ ଗ୍ରାମେ ପରିଭ୍ରମଣ ସମୟରେ ଲୋକମାନଙ୍କୁ ଜିଲ୍ଲାଧୀଶ୍ୱରଙ୍କ ତଦନ୍ତ ସମୟରେ କିପରି ଭାବରେ ଓଡ଼ିଆ ଭାଷାର ଉପକାରିତା ତର୍କ ବିତର୍କ ଦ୍ୱାରା ପ୍ରତିପନ୍ନ କରାଇବେ ସେଥିନିମନ୍ତେ ସେ ବିଶେଷ ଚେଷ୍ଟିତ ଥିଲେ। ରାତ୍ରି ମଧ୍ୟରେ ବହୁ ଦୂରବର୍ତ୍ତୀ ଗ୍ରାମରେ ଉପସ୍ଥିତ ହୋଇ ସେହି ଗ୍ରାମବାସୀଙ୍କୁ ଉତ୍କଳ ଭାଷା ପ୍ରଚଳନ ମନ୍ତ୍ରରେ ଦୀକ୍ଷିତ କରୁଥିଲେ। ହିନ୍ଦୀ ଭାଷା ପ୍ରଚଳନ ପକ୍ଷପାତୀ କର୍ମଚାରୀଗଣଙ୍କ ବୈଧୃତି ପ୍ରତି ତିଳେ ମାତ୍ର ଭ୍ରୂକ୍ଷେପ ନ କରି ଦେଶର ମାୟା ମମତା ଅନୁବନ୍ଧନରେ ବଶବର୍ତ୍ତୀ ହୋଇଥିଲେ। ଏହିପରି ତାଙ୍କର ଓଡ଼ିଆ ଭାଷା ପ୍ରଚଳନ କଳ୍ପେ କେତେ ରାତ୍ରିଯାପନ ଓ ପ୍ରାତଃକାଳରେ ନିଜର ସରକାରୀ କାର୍ଯ୍ୟରେ ଉପସ୍ଥିତି କମ୍ ଶ୍ଳାଘାର ବିଷୟ ନଥିଲା। + + + ବୈକୁଣ୍ଠନାଥଙ୍କ ଏତାଦୃଶ କର୍ମବୀରତ୍ୱ ବିନା ଆଜି ସମ୍ୱଲପୁର ଭାଇମାନଙ୍କୁ + + + + ସେହି ବିଚ୍ଛେଦ କଷ୍ଟ ସହ୍ୟ କରିବାକୁ ପଡୁଥାନ୍ତା।"

ସମ୍ବଲପୁରର ଅନ୍ୟତମ ବିଶିଷ୍ଟ ସନ୍ତାନ ସୁସାହିତ୍ୟିକ ଶ୍ରୀ ବ୍ରଜମୋହନ ପଣ୍ଡା ବୈକୁଣ୍ଠନାଥଙ୍କ ଅକାଳ ବିୟୋଗରେ ମର୍ମାହତ ହୋଇ ପ୍ରକାଶ କରିଥିବା କବିତାଟି ଫୁଟନୋଟ ସହ ଏଠାରେ ଉଦ୍ଧୃତ ହେଲା ।

## ବୈକୁଣ୍ଠନାଥ ପୂଜାରୀ *

ମରୁଭୂମି ମଧ୍ୟେ ଯେହ୍ନେଁ ଏକଇ କୁସୁମ
ପୂର୍ଣ୍ଣିତ ସୁବାସେ, କିବା ବିଶାଳ ବାରିଧି
ବକ୍ଷେ ଏକହିଁ ତରଣୀ ହୋଇଛି କି ପୂର୍ଣ୍ଣ
ତହିଁ ରତ୍ନାକର - ଗର୍ଭେ ସମୁଜ୍ଜ୍ୱଳ ନିଧି ।
ତେସନେ ହେ କ୍ଷଣଜନ୍ମା ଥିଲ ଏ ଅଞ୍ଚଳେ
ଜାଗିଥାନ୍ତେ ଜନ୍ମଦା ର ସୁଷୁପ୍ତ ସନ୍ତାନେ
ତୁମ୍ଭ ଯୋଗେ: କିନ୍ତୁ ନିଦାରୁଣ କାଳ ବଳେ
ହରିନେଲା ତୁମ୍ଭଙ୍କୁ ସେ ଜୀବନ ମଧ୍ୟାହ୍ନେ ।
କାନ୍ଦଇ ସମ୍ବଲପୁର କାନ୍ଦେ ମହାନଦୀ
କାନ୍ଦନ୍ତି ହିମାଶ୍ରୁ ଛଳେ ତରୁଲତା ଗଣ
କାନ୍ଦୁଛନ୍ତି ନରନାରୀ ନିରୋଳେ ଅବଧି
ହରାଇ ତୁମ୍ଭଙ୍କୁ ଦେବ ଉନ୍ନତି କେତନ ।
ବର୍ଦ୍ଧିଦେବାମର କାୟା କଲ ଦ୍ୟୁ ସନାଥ
କିନ୍ତୁ ତବ ମାତୃଭୂମି ହୋଇଲା ଅନାଥ ।

---

* ଏ ମହାତ୍ମା ସମ୍ବଲପୁରରେ ଉନବିଂଶ ଶତାବ୍ଦୀର ପ୍ରଥମ ଏମ୍.ଏ. ସମ୍ବଲପୁର ମଧ୍ୟପ୍ରଦେଶରେ ଥିବା ବେଳେ ଇ.ଏ.ସି. (ବର୍ତ୍ତମାନ ଡେ଼ପୁଟି କଲେକ୍ଟର) ହୋଇଥିଲେ । ଏ ଅତି ଉତ୍ସାହୀ ଯୁବକ ଥିଲେ । ଏହାଙ୍କ ଯତ୍ନରେ ସମ୍ବଲପୁରରେ ଓଡ଼ିଆ ଭାଷା ରକ୍ଷା ହେଲା । ୧୯୦୩ ସାଲରେ ଯୁବାବସ୍ଥାରେ ଅକାଳବିୟୋଗ ହେଲା । (ଯୌବନ ଗାଥା - ପ୍ରଥମ ଉଚ୍ଛ୍ୱାସ ପୃଷ୍ଠା ୪୯ )

# ସୁନାବହୂ



ଡ଼ାଃ ଜନାର୍ଦ୍ଦନ ପୂଜାରୀ

# ଡ଼. ଜନର୍ଦ୍ଧନ ପୂଜାରୀ

ସମ୍ବଲପୁର ଜିଲ୍ଲାର ତିନିଜଣ ସନ୍ତାନ ଚିରସ୍ମରଣୀୟ ହୋଇ ରହିବେ । ସେମାନେ ହେଉଛନ୍ତି ବୀର ସୁରେନ୍ଦ୍ର ସାଏ, ସ୍ୱାଭାବ କବି ଗଙ୍ଗାଧର ମେହେର ଓ ପ୍ରାତଃ ସ୍ମରଣୀୟ ଡାକ୍ତର ଜନାର୍ଦ୍ଦନ ପୂଜାରୀ । ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ୱେ ଶ୍ରୈହାନ ବୀର ସୁରେନ୍ଦ୍ର ସାଏଙ୍କ ଜ୍ୱଳନ୍ତ ଦେଶପ୍ରେମ ଓ ଅଧୃଶ୍ୟ ବୀରତା ପାଇଁ ସେ ଆମର ନମସ୍ୟ । କବିବର ଗଙ୍ଗାଧର ମେହେର ଓଡିଶାର ସାହିତ୍ୟ କ୍ଷେତ୍ରରେ ସମ୍ବଲପୁରର ମୁଖ ଉଜ୍ଜ୍ୱଳ କରିଛନ୍ତି ଓ ଓଡିଆ ତାଙ୍କର ସାହିତ୍ୟରେ ଆଦର୍ଶ ଚରିତ୍ର ଚିତ୍ରଣ ଓ ପ୍ରକୃତି ପ୍ରେମ ଯୋଗୁଁ ଅମର ହୋଇଛନ୍ତି । ଡାକ୍ତର ଜନାର୍ଦ୍ଦନ ପୂଜାରୀ କର୍ମବୀର ରୂପେ ସମ୍ବଲପୁର ଜିଲ୍ଲାରେ ଚିରସ୍ମରଣୀୟ ହୋଇ ରହିବେ ।

ଡାକ୍ତର ପୂଜାରୀ ସମ୍ବଲପୁର ଜିଲ୍ଲା ବାହାରେ ଅପେକ୍ଷାକୃତ ଅପରିଚିତ, କାରଣ ଖ୍ୟାତି କହିଲେ ଆମେ ଯାହା ବୁଝୁଁ, ସେ ସେଥିରୁ ଯଥେଷ୍ଟ ଦୂରରେ ରହୁଥିଲେ । ସେ ଥିଲେ ସ୍ଥିତ ପ୍ରଜ୍ଞତାର ମୂର୍ତ୍ତିମାନ ଅବତାର ତେଣୁ ସାଂସାରିକ ଖ୍ୟାତି ଲିପ୍‌ସା କେବେ ତାଙ୍କର ଚିତ୍ତରେ କୌଣସି ପ୍ରଭାବ ପକାଇ ପାରିନାହିଁ । ଭଗବଦ୍ ଗୀତାରେ ଦ୍ୱିତୀୟ ଅଧ୍ୟାୟରେ ଲେଖାଅଛି ।

"ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ
ଯସ୍ୟା ଜାଗୃତି ଭୂତାନି ସାନିଶା ପଶ୍ୟତେ ମୁନେଃ"

"ଐହିକ ଆଡ଼ମ୍ବର ପ୍ରସିଦ୍ଧି ଲିପ୍‌ସା ଇତ୍ୟାଦି ବିଷୟମାନଙ୍କରେ ରତ ରହିଥିବା ଯୋଗୁଁ ସାଧାରଣ ଜୀବ ସେଥିପାଇଁ ସଚେତନ ଥାଆନ୍ତି; କିନ୍ତୁ ତତ୍ତ୍ୱଦର୍ଶୀ ମୁନିଙ୍କ ସକାଶେ ତାହା ରାତ୍ରି ସମାନ ।" ଡାକ୍ତର ଜନାର୍ଦ୍ଦନ ପୂଜାରୀ ଜଣେ ଅପ୍ରତିଦ୍ୱନ୍ଦୀ ନେତା ହୋଇ ପାରିଥାନ୍ତେ । କିନ୍ତୁ ସେ ସର୍ବୋଚ୍ଚ ଜନ ପ୍ରିୟତା ଅର୍ଜନ କରିଥିଲେ ସୁଦ୍ଧା କେବେହେଁ ନିର୍ବାଚନ ମୂଳକ ପଦବୀ ପାଇଁ ମନ ବଳାଇ ନ ଥିଲେ । ନିଃସ୍ୱାର୍ଥ ଜନସେବା ଥିଲା ତାଙ୍କର ଜୀବନର ବ୍ରତ ।

ସେ ଉଚ୍ଚକୋଟିର ସାହିତ୍ୟିକ ହୋଇ ପାରିଥାନ୍ତେ । ତାଙ୍କର ସାହିତ୍ୟ ସେବା ବିଷୟରେ ଆଲୋଚନା କଲେ ଏ ବିଷୟ ସ୍ପଷ୍ଟ ହେବ । ମାତ୍ର ସାହିତ୍ୟରେ ସୁଦ୍ଧା ଖ୍ୟାତି ଅର୍ଜନକ୍ କରିବାକୁ ସେ କେବେ ଋହିଁ ନାହାନ୍ତି । ଏହାଛଡା ଅଭିନୟ ଓ ଚିତ୍ରକଳାରେ ସେ ଯୌବନରେ ଯେପରି ଦକ୍ଷତା ଦେଖାଇଥିଲେ ସେଥିରେ ମଧ୍ୟ ସେ ଉତ୍କଳ - ବିଖ୍ୟାତ ହୋଇ ପାରିଥାନ୍ତେ । ମାତ୍ର ସେ ଏ ବିଷୟରେ ମଧ୍ୟ ଉଦାସୀନ ଥିଲେ ।

ସେ ତାଙ୍କର ଜୀବନ କାଳରେ ଏପରି ବୀତସ୍ପୃହ ଜୀବନ ଯାପନ

କରୁଥିଲେ । ତାଙ୍କର ଐହିକ ଜୀବନ ପରେ, ତାଙ୍କୁ ସର୍ବଜନ ବିଦିତ କରିବା ଏ ପୁସ୍ତକର ଉଦ୍ଦେଶ୍ୟ ନୁହେଁ । ତାଙ୍କୁ ଜୀବନ କାଳରେ ତାଙ୍କର ଆଦର୍ଶ ଜୀବନ୍ ଚରିତ ସଙ୍କଳନ କରିବାର ଚେଷ୍ଟାକୁ ସେ ପସନ୍ଦ କରି ନ ଥିଲେ ଓ ସେଥିପାଇଁ ତାଙ୍କର ଜୀବନୀ ବିଷୟରେ ଜିଜ୍ଞାସୁମାନଙ୍କର ପ୍ରଶ୍ନକୁ ସେ ବରାବର ଏଠାଇ ଦେଉଥିଲେ । କିନ୍ତୁ ତାଙ୍କର ଜୀବନର ଯେଉଁ ମହତ ଘଟନାବଳୀ ଆମ୍ଭମାନଙ୍କୁ ଏକ ଉତ୍ତମ ଆଦର୍ଶରେ ଅନୁପ୍ରାଣିତ କରିବ,ସେପରି ଘଟନାମାନଙ୍କର ଏକ ସଙ୍କଳନ ଆମ୍ଭମାନଙ୍କୁ ସତ୍‌ପଥରେ ପରିଚାଳିତ କରିବ ଏହି ଆଶାକରି ଏଜୀବନୀ ପ୍ରକାଶ କରାଯାଉଛି । ଏଥିରେ ଅବଶ୍ୟ ତାଙ୍କର ଜୀବନର ଛାୟାର କିୟଦଂଶ ମାତ୍ର ପ୍ରତିଫଳିତ ହୋଇଛି । ତାଙ୍କର ବିରାଟ ବ୍ୟକ୍ତିତ୍ୱର ପୂର୍ଣ୍ଣ ଚିତ୍ର ଦେବାରେ ଏ ପୁସ୍ତକ ଅକ୍ଷମ ।

ଏ ପୁସ୍ତକ ପ୍ରକାଶ ପାଇଁ ଡ.ଜନାର୍ଦ୍ଦନ ପୂଜାରୀଙ୍କ ଜ୍ୟେଷ୍ଠ ଭ୍ରାତା ଶ୍ରୀଯୁକ୍ତ ପ୍ରସନ୍ନ କୁମାର ପୂଜାରୀଙ୍କ ଲେଖା ଓ କଥା ଅନେକ ପ୍ରେରଣା ଦେଇଛି । ଏହାଛଡା ତାଙ୍କର ପରିବାରର ଅନ୍ୟଲୋକ ଓ ମୋର ବ୍ୟକ୍ତିଗତ ସଂସର୍ଗ ଏ ପୁସ୍ତକ ପ୍ରଣୟନରେ ଯଥେଷ୍ଟ ସାହାଯ୍ୟ କରିଛି ।

ଡାକ୍ତର ପୂଜାରୀଙ୍କ ଜୀବନରୁ ଆମର ଅନେକ କିଛି ଶିଖିବାର ଅଛି । କିନ୍ତୁ ସେ ଜୀବନର ଛାୟା ଏ ଜୀବନରେ ସ୍ପଷ୍ଟ ଭାବରେ ପଡ଼ି ନ ଥିବାରୁ ଓ ଡାକ୍ତର ପୂଜାରୀଙ୍କ ଜୀବନରୁ ଶିକ୍ଷଣୀୟ ଘଟଣାବଳୀ ଏ ଜୀବନରେ ଖୁବ୍ କମ୍ ଦିଆଯାଉଥବାରୁ ଏହା ତାଙ୍କର ଉପଯୁକ୍ତ ଜୀବନ ବୃତାନ୍ତ ହୋଇପାରିଲା ନାହିଁ । ଏଥିପାଇଁ ଡାକ୍ତର ପୂଜାରୀଙ୍କ ଜୀବନ ବିଷୟରେ ମୋର ଅନଭିଜ୍ଞତା ଓ ତାଙ୍କର ଚରିତ୍ରର ସମ୍ୟକ ବର୍ଣ୍ଣନାରେ ମୋର ଅକ୍ଷମତା ମୁଖ୍ୟତ ଦାୟୀ । ତଥାପି ମୁଁ ଆଶା କରୁଛି । ଏ ଜୀବନରୁ ଓଡିଶାର ତଥା ସମ୍ବଲପୁରର ଜନସାଧାରଣ ଡାକ୍ତର ପୂଜାରୀଙ୍କ ଉଚ୍ଚ ଆଦର୍ଶବାଦ ବିଷୟରେ କିଛି କିଛି ଧାରଣା କରି ସେହି ଆଦର୍ଶରେ ଅନୁପ୍ରାଣିତ ହେବେ । ଇଂରେଜ କବି ଦିନେ ଲେଖିଥିଲେ :-

"Lives of great men all remind us
We can make our lives divine"

ଇତି

**ଶ୍ରଦ୍ଧାକର ସୂପକାର**

ତା:୨୬।୦୧।୧୯୬୨

# ପ୍ରଥମ ପରିଚ୍ଛେଦ

"ଦୁମ୍ଭ ଦୁମ୍ଭ ବାଜେ ବାଇଦ, ଆଜି - ଆଜି ଝିଅର ବିଭା।"

ଶିମିଳିପୁରର କୃତ୍ତିବାସ ମିଶ୍ରଙ୍କର ପାଞ୍ଚଟି ପୁଅ ଆଉ ଗୋଟିଏ ଝିଅ। ଝିଅଟି ସର୍ବକନିଷ୍ଠା, ସୁତରାଂ ବଡ଼ ଆଦରର ପାତ୍ର। କନ୍ୟାଟି ଯେତେବେଳେ ଜନ୍ମିଲା, ସେତେବେଳେ ପାଞ୍ଚ ଭାଇ ମା ପାଖରେ ବସି ଭଉଣୀର ନାମ ଦେବା ପାଇଁ କେତେ ସୁନ୍ଦର ସୁନ୍ଦର ନାମ ମାନ ବାଛିବାକୁ ଲାଗିଲେ; ଚନ୍ଦ୍ରମୁଖୀ, କମଳମୁଖୀ, ବିମଳା, ସରଳା, କମଳା, ସୁଶୀଳା, ଚଞ୍ଚଳା, ବିନୋଦିନୀ, ନିତମ୍ବିନୀ, କନକଲତା, କୁଞ୍ଜଲତା, ଦେବହୂତୀ, ଭଗବତୀ, ଚନ୍ଦ୍ରପ୍ରଭା, ଲକ୍ଷ୍ମୀ ପ୍ରଭୃତି ନାନା ନାମ କୁହାହେଲା। କୌଣସିଟି ସର୍ବାଙ୍ଗ-ସୁନ୍ଦର ବୋଲି ପସନ୍ଦ ହେଲା ନାହିଁ। ତା'ପରେ ଅନେକ ଚିନ୍ତା ପରେ ଗୋଟିଏ ନାମ ବାହାରିଲା - 'ଶୈଳବାଳା', ଏହିଟିରେ ସମସ୍ତଙ୍କର ମନଃପୂତ ହେଲା। ଶୁଭ ଦିନରେ ମିଶ୍ର ମହାଶୟ କନ୍ୟାର ନାମକରଣ କଲେ, "ଶୈଳବାଳା"; କିନ୍ତୁ ଶୈଳବାଳାକୁ ଡ଼ାକିବା ବେଳେ ପ୍ରାୟ କେହି ତାର ପୂରା ନାମ ଧରି ଡ଼ାକୁ ନଥିଲେ। ଶୈଳ, ଶୈଳୀ, ଶୈଳଜା ପ୍ରଭୃତି ଯେ ଯାହା ପସନ୍ଦ କରୁଥିଲେ, ସେ ସେଇଆ କହି ଶୈଳବାଳାକୁ ଆଦର କରୁଥାନ୍ତି।

କ୍ରମେ ଶୈଳବାଳା ସାତ ଆଠ ବର୍ଷର ହେଲା। ଶୈଳବାଳାର ଭାଇମାନେ ଲେଖାପଢ଼ା କରନ୍ତି, ସେମାନେ ଯତ୍ନ କରି ଭଉଣୀକୁ ମଧ ଲେଖାପଢ଼ା ଶିଖାନ୍ତି। ଶୈଳବାଳାର ମେଧା ଶକ୍ତି ଖୁବ୍ ପ୍ରଖର ଥିଲା। ଯାହା ଶୁଣୁଥିଲା, ତାହା ମନେ ରଖି ପାରୁଥିଲା। ମିଶ୍ର ମହାଶୟଙ୍କର ଗୃହିଣୀ ମଧ ଅତ୍ୟନ୍ତ ବୁଦ୍ଧିମତୀ। ସେ ବୁଝିଥିଲେ, ମଧବିତ୍ତ ଓଡ଼ିଆଙ୍କ ଘରର ଝିଅକୁ ପିଲାବେଳେ ଆଦର କରି କେବଳ ଲେଖା ପଢ଼ା ଶିଖାଇଲେ ଚଳେ ନାହିଁ, ଏଣୁକରି ସେ ଅତି ଯତ୍ନରେ କନ୍ୟାକୁ ଗୃହ କର୍ମ ଶିଖାଉଥିଲେ ଆଜିକାଲିର ଟୋକୀମାନେ ଛୁଞ୍ଚିକାମ ଶିଖୁଥାନ୍ତି। ଶୈଳବାଳାର ମା' ଝିଅକୁ ସେଥିରୁ ମଧ କିଛି ଶିଖାଇଥିଲେ।

ଦେଖୁ ଦେଖୁ ଶୈଳବାଳା ଦଶମ ବର୍ଷରେ ପଦାର୍ପଣ କଲା, ଏବେ ତା'ର

ବିବାହ ହେବା ଉଚିତ। ମିଶ୍ର ମହାଶୟ କନ୍ୟାର ବିବାହାର୍ଥ ପାତ୍ର ଅନ୍ୱେଷଣ କରିବାକୁ ଲାଗିଲେ। ନାନା ସ୍ଥାନରୁ ସମ୍ବନ୍ଧ ଆସିବାକୁ ଲାଗିଲା। କନ୍ୟା ଦେଖିବ ଅନେକ ବିଶେଷ ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ। ଶୈଳବାଳା ପରମ ରୂପବତୀ, ଅତି ଗୌରବର୍ଣ୍ଣ, ସର୍ବାଙ୍ଗ ମାଂସଳ, ଲାବଣ୍ୟମୟ ଓ ସୁକୋମଳ ଯେପରି କୁସୁମରେ ଗଢ଼ା। ଚନ୍ଦ୍ର ପରି ମୁହଁ ଖଣ୍ଡିକରେ ସଦାବେଳେ ଯିମିତି ହସ ଲାଗି ରହିଥାଏ। ଚକଚକିଆ କଳା ରାଶିକୃତ କେଶ ଛାଡ଼ିଦେଲେ, ଅଣ୍ଟା ଡ଼େଇଁ ପଡ଼େ। କପାଳ ଖଣ୍ଡିକ ଦର୍ପଣ ପରି - ଯିମିତି କୁନ୍ଦରେ କଟା। ଭ୍ରୁ ଦୁଇଟି ଯେପରି ତୂଳିକା ଦେଇ ଅଙ୍କା ରହିଛି। ବଡ଼ ବଡ଼ ଚକ୍ଷୁ ଦୁଇଟି ବେଶ୍ ଭସା ଭସା, ଘହାଣୀ ଅତି କୋମଳ ଲଜ୍ଜାମଖା। ହସ୍ତ, ପଦ, କଣ୍ଠ ପ୍ରଭୃତି ସର୍ବାଙ୍ଗ ହିଁ ନିଖୁଣ। ଚାଲିବା ସମୟରେ ଛୋଟ ଛୋଟ ପାଦ ଦୁଇଖଣ୍ଡି ଏତେ ଧୀରେ ଧୀରେ ପକାଏ ଯେପରି ମାଟିରେ ଜଣାପଡ଼େ ନାହିଁ। ଫଳ କଥା, ଯେ ଶୈଳବାଳାକୁ ଥରେ ଦେଖେ, ସେ ତାହାକୁ ଗୃହଲକ୍ଷ୍ମୀ କରିବାକୁ ଅଭିଳାଷ କରେ।

ଏହିପରି କେତେ କାଳ ଅତିକ୍ରାନ୍ତ ହେଲା, ଶୈଳବାଳାର ବିବାହ କୌଣସିଠି ସ୍ଥିରୀକୃତ ହେଲାନାହିଁ। ଶୈଳବାଳାର ମାଆର ଇଚ୍ଛା ପାତ୍ରଟି ଅଳ୍ପବୟସ୍କ, ଶ୍ରୀମାନ୍ ଓ ସଙ୍ଗତିସମ୍ପନ୍ନ ହୋଇଥିବ। ଭ୍ରାତାଗଣଙ୍କର ପ୍ରତିଜ୍ଞା, ଭଲ ବିଦ୍ୱାନ ପାତ୍ର ନହେଲେ ଭଉଣୀର ବିବାହ ଦେବେ ନାହିଁ। ମିଶ୍ର ମହାଶୟଙ୍କର ବିଶେଷ ଆଗ୍ରହ ସେପରି କନ୍ୟାଟିକୁ ସଦ୍‌ବଂଶରେ ଦେଇପାରନ୍ତି। କିନ୍ତୁ ଗୋଟାଏ ପାତ୍ରରେ ଏତେ ଗୁଣ ପାଇବା ଦୁଷ୍କର। ବସ୍ତୁତଃ ଶୈଳବାଳାର ବିବାହ ବିଳମ୍ବ ହେବାକୁ ଲାଗିଲା। ଘର ଭଲ ହୁଏ ତ ବର ଭଲ ହେଉନାହିଁ। ଘର ଓ ବର ଦୁଇଟା ଭଲ ହୁଏତ ଅବସ୍ଥା ଭଲ ହେଉନାହିଁ। ବାଛୁ ବାଛୁ ଶୈଳବାଳାର ବୟସ ଏକାଦଶ ବର୍ଷ ଅତିକ୍ରମ କଲା। ମିଶ୍ର ମହାଶୟ ବଡ଼ ଚିନ୍ତାରେ ପଡ଼ିଲେ।

ଯାହାହେଉ, ଅନେକ ଚିନ୍ତା ପରେ ଗୋଟାଏ ମନୋମତ ପାତ୍ର ମିଳିଲା। ପାତ୍ରଟି ଆଉ ସମସ୍ତଙ୍କର ମନୋମତ ହେଲା ସତ୍ୟ, କିନ୍ତୁ ଗୃହିଣୀଙ୍କର ମନୋମତ ହେଲାନାହିଁ: କାରଣ ଯେଉଁ ଗ୍ରାମରେ ପାତ୍ର ସ୍ଥିର ହେଲା, ସେ ଗ୍ରାମ ଶିମିଳିପୁରଠାରୁ ଅନେକ ଦୂରରେ - ପ୍ରାୟ ଦୁଇ ଦିନର ପଥ। ନୌକା ପଥରେ ବଡ଼ ବଡ଼ ନଦୀ ପାରି ହୋଇ ଯିବାକୁ ହୁଏ। ତାହା ହେଲେ କଅଣ ହେବ? ଆଉ ଚେଷ୍ଟାର ସମୟ ନାହିଁ। ଏହି ପାତ୍ର ସଙ୍ଗରେ ବିବାହ ଦେବାର ସ୍ଥିର ହେଲା।

ପାତ୍ରର ନାମ ନଟବର, ସୋନପୁରର ଜଗନ୍ନାଥ ସାମନ୍ତଙ୍କ ପୁତ୍ର। ସାମନ୍ତ ମହାଶୟ ଖୁବ୍ ସଙ୍ଗତିସମ୍ପନ୍ନ ଲୋକ। ତାଲୁକ, ମୁଲୁକ, ଜମିଜମା, ମହାଜନୀ କାରବାର ପ୍ରଭୃତିରେ ସାମନ୍ତ ମହାଶୟଙ୍କର ବାର୍ଷିକ ପ୍ରାୟ ଦଶହଜାର ଟଙ୍କା ଆୟ। ତାଙ୍କର ଗୋଟିଏ

ମାତ୍ର ପୁତ୍ର, ପିଲାଟି ଦେଖିବାକୁ ବେଶ୍ ସୁପୁରୁଷ, ବୟସ ୧୮ / ୧୯ ବର୍ଷ। ଦୁଇଟି ପରୀକ୍ଷାରେ ପାସ୍ କରି ସହରରେ ପଢୁଛି। ସାମନ୍ତ ମହାଶୟ ଶୈଳବାଳାର ରୂପ ଦେଖି, ତାହାକୁ ପୁତ୍ରବଧୂ କରିବାକୁ ଆଗ୍ରହାନ୍ୱିତ ହେଲେ। ଶୁଭ ଦିନରେ ଶୁଭ ଲଗ୍ନରେ ନଟବରଙ୍କ ସଙ୍ଗରେ ଶୈଳବାଳାର ଶୁଭ ବିବାହ ହୋଇଗଲା।

ସେହି ବିବାହ ଆମୋଦର ସଙ୍ଗେ ସଙ୍ଗେ ଶୈଳବାଳା ଓ ତାର ମାତାର ଜୀବନର ଆମୋଦ-ପ୍ରମୋଦ, ସୁଖ-ବିଳାସଅନ୍ତର୍ହିତ ହେଲା। କନ୍ୟାକୁ ଶାଶୁଘରକୁ ପଠାଇବା ସମୟରେ ମାତା ଓ କନ୍ୟା ଉଭୟେ କାନ୍ଦୁଥାଆନ୍ତି, ମାତ୍ର ସେ ଦୁଃଖ କ୍ଷଣସ୍ଥାୟୀ: କିନ୍ତୁ ଶୈଳବାଳା ଓ ତା'ର ମାତାର ଚକ୍ଷୁର ପାଣି ଅନେକ ଦିନରେ ସୁଦ୍ଧା ସରିଲା ନାହିଁ: ସେହି ସବୁ କ୍ରମେ ଶୁଣିପାରିବ।



# ଦ୍ୱିତୀୟ ପରିଚ୍ଛେଦ

ମାଆ ବାପା କରନ୍ତି କାମନା,
ଭଲ ଘରେ ଦେବେ ଝିଅ,
କପାଳ ଯଦି ହୁଏ ଲୋ ମନ୍ଦ,
କିଏ କି କରିବ କହ ।

କୃତ୍ତିବାସ ମିଶ୍ର ତେତେ ଧନୀ ଲୋକ ନୁହଁନ୍ତି - ଜମିଜମା, ନଗଦ ଟଙ୍କା ଅଧିକ କିଛି ନାହିଁ; ଚାକିରୀ କରି ବାର୍ଷିକ ଆଠଶ, ଦଶ ଶହ ଟଙ୍କା ଉପାର୍ଜନ କରନ୍ତି । ଖର୍ଚ୍ଚ ମଧ ନିତାନ୍ତ କମ୍ ନଥିଲା । ପାଞ୍ଚଟା ପିଲାଙ୍କୁ ଲେଖାପଢ଼ା ଶିଖାଇବାକୁ ହେଉଛି, ଦାସଦାସୀ ସମେତ ପନ୍ଦର ଷୋହଳ ଜଣ ଲୋକଙ୍କର ଭରଣ ପୋଷଣ ଚଳାଇବାକୁ ହେଉଛି, ସଂସାର ଖର୍ଚ୍ଚ ଅଣ୍ଟାଇ କିଛି ମାତ୍ର ବଞ୍ଚୁନାହିଁ । ତେବେ ସେ ବେଶ୍ ବୁଦ୍ଧିମାନ ଲୋକ, ଗୋଟାଏ ଦୁଇଟା ବର୍ଷ ନାନା ରୂପେ ସଂସାର ଖର୍ଚ୍ଚ କମ୍ କରି କନ୍ୟାର ବିବାହ ପାଇଁ କିଛି ଟଙ୍କା ଜମା କରିଥିଲେ । ଶୈଳବାଳାର ବିବାହରେ ସେ ପ୍ରାୟ ହଜାରେ ଟଙ୍କା ବ୍ୟୟ କରିଥିଲେ । ଏଥିପାଇଁ ତାଙ୍କୁ କିଛି ଋଣୀ ହେବାକୁ ମଧ ପଡ଼ିଥିଲା ।

ବଡ଼ ଦୁଃଖର ବିଷୟ ଏତେ କରି ସୁଦ୍ଧା କୌଣସି ସୁଫଳ ମିଳିଲା ନାହିଁ । ମିଶ୍ର ମହାଶୟଙ୍କ କୁଟୁମ୍ବଙ୍କ ସଙ୍ଗରେ ତାଙ୍କର ସୌହାର୍ଦ୍ଦ୍ୟ ରହିଲା ନାହିଁ । ତାଙ୍କର ବୈବାହିକ ଖୁବ୍ ସମ୍ପତ୍ତିଶାଳୀ, କିନ୍ତୁ ବଡ଼ କୃପଣ ପ୍ରକୃତିର ଲୋକ ଥିଲେ । ଅର୍ଥକୁ ସେ ବଡ଼ ଭଲ ପାଉଥିଲେ, ଗୋଟିଏ ପଇସାକୁ ଗୋଟିଏ 'ମୋହର' ପରି ଦେଖୁଥିଲେ । ସେ ଅତି ଦରିଦ୍ରାବସ୍ଥାରୁ ନିଜେ ନ ଖାଇ ନ ପିଇ ଏତେଗୁଡ଼ିଏ ଟଙ୍କା ଜମା କରିଛନ୍ତି, ଏଣୁ କରି ଅର୍ଥ ପ୍ରତି ତାଙ୍କର ଏତେ ମମତା । ଏଥିପାଇଁ କାହାର ସଙ୍ଗେ ତାଙ୍କର ସେପରି ଅଧିକ କିଛି ଆତ୍ମୀୟତା, କୁଟୁମ୍ବତା ନଥିଲା: ବୈବାହିକଙ୍କ ସଙ୍ଗରେ ମଧ ରହିଲା ନାହିଁ ।

ଶୈଳବାଳାର ପିତା ତାଙ୍କର କନ୍ୟାକୁ ଦୁଇ ଶତ ଟଙ୍କାର ଅଳଙ୍କାର ଦେଇଥିଲେ । ବୃଦ୍ଧ ସାମନ୍ତଙ୍କର ଶ୍ୟେନ ଚକ୍ଷୁ, ସେଥିରେ ପୁଣି ବୈବାହିକ ଚାତୁରୀର ଚିହ୍ନ ଦେଖି ପାରିଥିଲା । ବର ପାଇଁ ସୁନା ମୁଦିଟିଏ ଓ ପାଟ ଯଥା ଆଦି ଆସିଥିଲା, ସେଥିରେ ନାନା ଦୋଷ । ବରକୁ ସେ ଏହିପରି ଭାବରେ ଫାଙ୍କି ଦେବାକୁ ଚାହେଁ, ତା ସଙ୍ଗରେ ଆତ୍ମୀୟତା ରହିବ କିପରି ? ତାଙ୍କର ମୁହଁଟି କିପରି ଗମ୍ଭୀର ହୋଇ ପଡ଼ିଲା । ଧୃତରାଷ୍ଟ୍ରଙ୍କର ଲୌହ ଭୀମ ଆଲିଙ୍ଗନ ପରି ମୁଦ୍ରିକାଟି ହସ୍ତ ଦୁଇଟିର ରୋଷ ଦୃଢ଼ ଆଲିଙ୍ଗନରେ ତଦବସ୍ଥା ପ୍ରାପ୍ତ ହେଲା ।

ଆତ୍ମୀୟତା ଭଙ୍ଗର ଆହୁରି ଗୋଟିଏ କାରଣ ଥିଲା। ଦୁଇ ସମ୍ବନ୍ଧଙ୍କ ମଧ୍ୟରେ ସମାଜ ବିରୋଧତା (ଅତି ଭୟଙ୍କର ବାଡ଼) ରହିଥିଲା। କେହି କାହାରି ଘରେ ଅନ୍ତତଃ ସାକ୍ଷାତ ଭାବରେ ଭୋଜନାଦି କରୁ ନଥିଲେ। ବିବାହ ସମୟରେ ଅନେକ କୂଳୀନ ବ୍ରାହ୍ମଣ ବରଯାତ୍ରାରେ ଯାଇଥିଲେ। ମିଶ୍ର ମହାଶୟ ସେମାନଙ୍କୁ ଯଥାଯୋଗ୍ୟ ସମ୍ମାନ କରିଥିଲେ: କିନ୍ତୁ ଠାକୁରଗଣ ଆହୁରି କିଛି ଅଧିକ ପ୍ରାର୍ଥନା କରି ପାଇନାହାନ୍ତି ବୋଲି ଅସନ୍ତୁଷ୍ଟ ହେଲେ: ସୁତରାଂ ସେମାନେ ସାମନ୍ତ ମହାଶୟଙ୍କୁ ବୁଝାଇ ଦେଲେ ଯେ କୃତିବାସ ଅତି ନୀଚ ବଂଶରେ ଜନ୍ମଗ୍ରହଣ କରିଛି, ତାହାର ସ୍ୱଭାବ ଚରିତ୍ର ନିତାନ୍ତ ଛୋଟ ଲୋକ ପରି। ଜଗନ୍ନାଥ ସାମନ୍ତ ରାଗି ନିଆଁ ହୋଇଗଲେ।

ସେ କିପରି ବୈବାହିକ ମହାଶୟଙ୍କର ଏ ଦୁର୍ବ୍ୟବହାରର ପ୍ରତିଶୋଧ ନେବେ, ତାହା ଚିନ୍ତା କରିବାକୁ ଲାଗିଲେ। ଗୃହକୁ ଯାଇ ଗୃହିଣୀଙ୍କ ପାଖରେ ସବୁ କହିଲେ। ଗୃହିଣୀ ମଧ୍ୟ ବେଶ୍ ଉପଯୁକ୍ତା। ଶୁଣିବା ମାତ୍ରକେ ଉପାୟ ଅନ୍ୱେଷଣ କରିବାକୁ ଆଉ ବିଳମ୍ବ ହେଲାନାହିଁ। କହିଲେ, "ବହୂକୁ ତାର ବାପଘରକୁ ଛାଡ଼ି ଦିଆହେବ ନାହିଁ।" କର୍ତ୍ତା ସେଥିରେ ଏକମତ ହେଲେ। ଶୈଳବାଳାର ଆଉ ପିତ୍ରାଳୟକୁ ଯିବାର ହେଲାନାହିଁ। ଶୈଳର ଭ୍ରାତା ଆସିଥିଲା - ଭଗିନୀକୁ ସଙ୍ଗରେ ନେଇ ଯିବାକୁ - ଅନେକ ଅନୁନୟ କଲା, ଫଳ କିଛି ହେଲାନାହିଁ। ଶୈଳବାଳାର ଶାଶୁ ତାକୁ ଅନେକ ଗାଳି ଗୁଲଜ କରି ତଡ଼ିଦେଲେ। ଅଭାଗିନୀ ବାଳିକା ଚିରଦିନ ଲାଗି ଶାଶୁଘରେ ବନ୍ଦୀ ହେଲା।

କୃତିବାସ ମିଶ୍ରେ ଏହି ସମ୍ବାଦ ଶୁଣି ଅନ୍ତରରେ ବଡ଼ ଆଘାତ ପାଇଲେ, ତାଙ୍କର ବ୍ରାହ୍ମଣୀ ସ୍ୱର ଧରି କାନ୍ଦି ଉଠିଲେ। ମା'ର ପ୍ରାଣ କାହିଁରେ ହିଁ ବୁଝେ ନାହିଁ - ସେ ଫେର ସୋନପୁରକୁ ଲୋକ ପଠାଇଲେ, କେତେ ଅନୁନୟ କଲେ; କିନ୍ତୁ କାହିଁରେ କିଛି ଲାଭ ହେଲା ନାହିଁ। ସାମନ୍ତ ମହାଶୟ ଓଲଟି ଖବର ଦେଲେ - ନ ଜାଣି ଛୋଟ ଲୋକର ଘରେ ପୁତ୍ରର ବିବାହ କରାଇଛନ୍ତି, ଯାହା ହୋଇ ଯାଇଛି ତାହା ଯେତେବେଳେ ଫେରିବ ନାହିଁ, ସେତେବେଳେ ସେ ଏମିତି ଛୋଟ ଲୋକର କୁଟୁମ୍ବ ସଙ୍ଗରେ କୌଣସି ସମ୍ବନ୍ଧ ରଖିବାକୁ ଋହାନ୍ତି ନାହିଁ। ପୁତ୍ରବଧୂକୁ କେବେହେଁ ପିତ୍ରାଳୟକୁ ପଠାଇବେ ନାହିଁ।

ଏହି ପ୍ରକାରେ ନୂଆ ବାନ୍ଧବ ଦ୍ୱୟଙ୍କ ମଧ୍ୟରେ ବିରୋଧ କ୍ରମେ ବଢ଼ିବାକୁ ଲାଗିଲା। ମିଶ୍ର ମହାଶୟ ଗୃହିଣୀଙ୍କୁ ବୁଝାଇଲେ, "ତୁମର କନ୍ୟା ମରିଯାଇଛି ଭାବି ସେ କୁଟୁମ୍ବର ନାମ ଆଉ ଧରିବ ନାହିଁ।" ଫଳରେ ତାହାହିଁ ହେଲା, ଦୁଇ ଋରିଦିନ କାଳ କାନ୍ଦି ରଡ଼ି ଶୈଳବାଳାର ମାତା ମନକୁ ପ୍ରବୋଧ ଦେଲେ।

ଶୈଳବାଳା ଆଉ କଅଣ କରିବ ? କେତେ ଦିନ କେବଳ କାନ୍ଦି କଟାଇଲା। ସ୍ନାନାହାର କଲା ନାହିଁ, କାହାରି ସଙ୍ଗରେ କଥା କହିଲା ନାହିଁ। ସେଥିରେ ତାର ଶାଶୂ ନଣନ୍ଦ ଅତ୍ୟନ୍ତ ବିରକ୍ତ ହୋଇ ନାନା ପ୍ରକାର ତିରସ୍କାର କରିବାକୁ ଲାଗିଲେ। ଅଗତ୍ୟା ଶୈଳବାଳା ଶାନ୍ତ ହୋଇ ଗୃହ କର୍ମରେ ମନ ଦେଲା। ଶୈଳବାଳା ମନେ ଭାବିଲା, ଅଦୃଷ୍ଟରେ ଯାହା ଥିଲା ତାହା ଘଟିଲା। ପିତା ମାତା ଥାଇ ସୁଦ୍ଧା ଏହି ବାଳିକା ବୟସରେ ମୁଁ ସେମାନଙ୍କ ସ୍ନେହରୁ ଚିରକାଳ ବଞ୍ଚିତ ହେଲି। ତେବେ ଯେଉଁମାନଙ୍କ ପାଖରେ ଅଛି, ଯହିଁରେ ସେମାନଙ୍କର ସ୍ନେହମମତା ପାଇ ପାରିବି, ସେଥିରେ ଚେଷ୍ଟା କରେଁ। ଶାଶୂ ଶ୍ୱଶୂର ତ ପିତାମାତା ତୁଲ୍ୟ। ଅବଶ୍ୟ ସେମାନଙ୍କ ପାଖରୁ ମାଆବାପାର ସ୍ନେହ ପାଇବି। ଶୈଳବାଳା ପ୍ରାଣପଣ କରି ଶାଶୁଶ୍ୱଶୁରଙ୍କ ସେବା କରିବାକୁ ଲାଗିଲା। କିନ୍ତୁ ଯାର ଅଦୃଷ୍ଟ ମନ୍ଦ, ତାର ସୁଖ କାହିଁରେ ହିଁ ହୁଏନାହିଁ। ଶୈଳବାଳା ଏତେ କରୁଛି - ଦିନଯାକ ମୁଣ୍ଡ ଝାଳ ତୁଣ୍ଡରେ ମାରି ସଂସାରର ସମସ୍ତ କାମ କରୁଛି - ତଥାପି ତାହାକୁ କେହି ଭଲ ଚକ୍ଷୁରେ ଦେଖୁନାହାନ୍ତି।

ଶୈଳବାଳାର ଗୋଟିଏ ନଣନ୍ଦ ଥିଲା, ତାର ନାମ ଲକ୍ଷ୍ମୀ। ଲକ୍ଷ୍ମୀ ଶୈଳଜା ଅପେକ୍ଷା ତିନି ଚାରି ବର୍ଷର ବଡ଼। ବେଶ୍ ବଡ଼ ଲୋକ ଘରେ ତାର ବିବାହ ହୋଇଥିଲା। ତାର ସ୍ୱାମୀ ମଧ୍ୟ ଅତ୍ୟନ୍ତ ବୁଦ୍ଧିମାନ - ସୁପୁରୁଷ: କିନ୍ତୁ ଲକ୍ଷ୍ମୀର ଭାଗ୍ୟରେ ସ୍ୱାମୀ ଗୃହ-ବାସ ଘଟିଲା ନାହିଁ। ଥରେ ଶାଶୁଘରକୁ ଯାଇ ମାସେ ଦୁଇମାସ କାଳ ଥିଲା। ସେଠାକୁ ଯାଇ କୌଣସି କାମ ଧାମ କରୁ ନଥିଲା; ବରଂ ସମସ୍ତଙ୍କ ସଙ୍ଗରେ କଳିକଜିଆ କରୁଥାଏ। ଶେଷରେ କାନ୍ଦି ରଡ଼ି ବାପ ଘରକୁ ଚାଲିଆସିଲା। ବାପଘରକୁ ଆସିବା ସମୟରେ ଲକ୍ଷ୍ମୀର ଶାଶୁ ତା'ଉପରେ ବିରକ୍ତ ହୋଇ ତାର ଅଳଙ୍କାର ଆଦି କାଢ଼ି ରଖିଥିଲେ। ଏଥିରେ ଲକ୍ଷ୍ମୀର ପିତାମାତା ଖୁବ୍ ରାଗିଲେ। ଲକ୍ଷ୍ମୀ ମଧ୍ୟ ଆସି ମାଆବାପା ପାଖରେ ଶାଶୁଘରର କୁତ୍ସାରଟନା କଲା - ତାକୁ ଖାଇବାକୁ ଦିଅନ୍ତି ନାହିଁ, ପିନ୍ଧିବାକୁ ଦିଅନ୍ତି ନାହିଁ, ସବୁବେଳେ ଗାଳି ଦିଅନ୍ତି ଇତ୍ୟାଦି କେତେ ରକମ କହିଲା। ସୁତରାଂ ଲକ୍ଷ୍ମୀର ମାତା ରାଗ କରି ଆଉ କନ୍ୟାକୁ ଶ୍ୱଶୁର ଘରକୁ ପଠାଇଲେ ନାହିଁ। କେତେଥର ଜାମାତା କନ୍ୟାକୁ ନେବାକୁ ଆସି ଫେରି ଯାଆନ୍ତି ଏବଂ ଶାଶୁ ଘର ପାଖରୁ ଟାଣ ଟାଣ ଦୁଇ ଚାରି କଥା ଶୁଣି ଯାଇଛନ୍ତି। ଫଳରେ ସାମନ୍ତ ମହାଶୟଙ୍କ ବଧୂର ପିତାମାତା ସଙ୍ଗରେ ଯେପରି ଭାବ, କନ୍ୟାର ଶାଶୁ ଘର ସଙ୍ଗରେ ମଧ୍ୟ ସେହିପରି ଭାବ ଥିଲା। ଜାମାତା ବିରକ୍ତ ହୋଇ ଦ୍ୱିତୀୟ ଥର ବିବାହ କଲେ। ଲକ୍ଷ୍ମୀର ନାମ ମଧ୍ୟ ଆଉ ଧରନ୍ତି ନାହିଁ।

ମାତାଙ୍କ ବ୍ୟତୀତ ଜଗତରେ ଅନ୍ୟ କାହାରି ସଙ୍ଗରେ ଲକ୍ଷ୍ମୀର ଭଲ ଭାବ

ନଥିଲା। ପଡ଼ାର ଲୋକଙ୍କ ସଙ୍ଗରେ କଳିକଜିଆ କରିବା, ପରର ନିନ୍ଦା କୁତ୍ସା କରିବା ହିଁ ଲକ୍ଷ୍ମୀର ନିତ୍ୟ ବ୍ରତ ଥିଲା। ଏହି ସମସ୍ତ ଗୁଣ ଲକ୍ଷ୍ମୀ ମା'ଠାରୁ ହିଁ ପ୍ରାପ୍ତ ହୋଇଥିଲା। ସେ ମା-ଝିଅ ଦୁହେଁ ମିଶି ଯେଉଁ ପକ୍ଷ ଅବଲମ୍ବନ କରୁଥିଲେ, କଳହ ଯୁଦ୍ଧରେ ସେହି ପକ୍ଷର ଜୟ ନିଶ୍ଚିତ ଥିଲା।

ପ୍ରଥମ ପ୍ରଥମରେ ଶୈଳବାଳା ଲଜ୍ଜାରେ କାହାରି ସଙ୍ଗରେ କଥା କହୁ ନଥିଲା, କିନ୍ତୁ ସେପରି ଆଉ କେତେଦିନ ପରି ହୁଏ ? ବିଶେଷତଃ ଶୈଳବାଳାର ମନରେ ସର୍ବଦା ହିଁ କଷ୍ଟ, ମନର କଥା ଯଦି କାହାରି ପାଖରେ ପ୍ରକାଶ କରି ପାରୁଥାନ୍ତା, ତେବେ କଷ୍ଟର ଅନେକ ଲାଘବ ହୁଅନ୍ତା। ଲକ୍ଷ୍ମୀ ଶୈଳଜାର ପ୍ରାୟ ସମବୟସ୍କା। ତା ସଙ୍ଗେ ସଦ୍ଭାବ ଥିଲେ, ଶୈଳଜା ମନର କଥା କହିବାର ଲୋକ ପାଆନ୍ତା। ଏହା ଭାବି ଶୈଳଜା ଲକ୍ଷ୍ମୀ ସଙ୍ଗରେ ପ୍ରୀତି ଆଳାପ କରି ତା ସଙ୍ଗରେ ସଖ୍ୟ ସ୍ଥାପନ କରିବାକୁ ଅନେକ ଚେଷ୍ଟା କରେ।

ଶୈଳ ଦିନେ ତାକୁ କହିଲା, "ନାନୀ, ମୋର କାନର ଗଣ୍ଠିଆଟି ଖୋଲି ଦିଅତ, ମତେ ଭାରି କାଟୁଛି।" ଲକ୍ଷ୍ମୀ ବାଟ ଖୋଜୁଥିଲା, କିପରି ଭାଉଜ ସଙ୍ଗରେ କଳି କରିବ। କୌଣସି ଗୋଟିଏ ଖୁଣ୍ଟିଖୁଣ୍ଟା ପାଇଲେ ହେଲା। ଶୈଳଜାର ସେହି ସରଳ କଥାକୁ ହିଁ ସେ କଜିଆର ଆଳ କରିନେଲା। କଥାରେ କହନ୍ତି, "ଖଳର ହଜାର ବାଟ ଖୋଲା।" ଲକ୍ଷ୍ମୀ ଅତି ରୁକ୍ଷ କଣ୍ଠରେ କହିଲା, "ମୁଁ କଣ ତୋର ଦାସୀ ? ମୋତେ କିଛି ଦରମା ଦେବୁ ?" ସରଳା ବାଳିକା ଶୈଳଜା ଭାବିଲା - ନାନୀ ତାକୁ ବ୍ୟଙ୍ଗ କରୁଛି - ସୁତରାଂ ସେ ମଧ୍ୟ ଉତ୍ତର ଦେଲା, "ସେୟା-ନ ହେଲେ କିଛି ଦିଆଯିବ।"

ଏଥର ଲକ୍ଷ୍ମୀ ନିଆଁର ମୂର୍ତ୍ତି ଧରିଲା। ନାକ ଟାଣି, ଆଖି ବୁଲାଇ କର୍କଶ ସ୍ୱରରେ କହିଲା, "ହେଲାଣି ମେନି। ଆଉ ଦେଖାନା ତୋର ବାପ ଭାଇ ଯେପରି ବଡ଼ ଲୋକ, ତତେ ସୁନାର ଅଳଙ୍କାର ଦେଇଛନ୍ତି; ଆମ୍ଭେମାନେ ଗରିବ ଲୋକ, ସୁନାରୂପା ତ କୌଣସି ଦିନ ଦେଖି ନାହୁଁ। ସେଥିପାଇଁ ଦେଖାଇବାକୁ ଆସିଛୁ।"

ଶୈଳଜା ଶୁଣି ଅବାକ୍। ଛଳଛଳ ଆଖିରେ ଲକ୍ଷ୍ମୀ ଆଡ଼କୁ ଚାହିଁଲା, ଲକ୍ଷ୍ମୀ ତେବେ ସୁଦ୍ଧା ଶାନ୍ତ ହୋଇନାହିଁ। ଟାଣ ଗଳାରେ ରଡ଼ି କହିଲା, "ଇଏ ମା ! ଏଇ ଅଳଙ୍କାର ଦେଇଛି, ସେଥିରେ ପୁଣି ଏତେ ଅହଙ୍କାର। ଆଉ ଯଦି ସେପରି କିଛି ହୋଇଥାନ୍ତା, ତାହାହେଲେ ଆଉ ମାଟିରେ ପାଦ ପଡ଼ନ୍ତା ନାହିଁ। ମୁଁ ଯିମିତି ତାର ଦାସୀ। ରାଣୀ ଅଳଙ୍କାର ପିନ୍ଧିବେ, ମୁଁ ପିନ୍ଧାଇଦେବି, ଖୋଷିଦେବି। ପୋଡ଼ାମୁହଁରେ ଲାଜ ଭି ନାହିଁ। ସେୟା ଆଉ ହେବ କେତେ ? ଯିମିତି ବଂଶରେ ଜନ୍ମ।"

ଏଥର ଶୈଳଜା କାନ୍ଦି ପକାଇଲା, କିନ୍ତୁ ତଥାପି ନିସ୍ତାର ନାହିଁ। ନଣନ୍ଦ ଅଧିକତର ରାଗରେ କହିବାକୁ ଲାଗିଲା, "ଇଏ ମା ! ଦେଖ ଦେଖି ଛୁଇଁଲେ ମାଛ କାମୁଡ଼େ। କେତେ ଅଭିମାନ ଦେଖ। କାନ୍ଦି ରଡ଼ି ଜିତିଯିବ, ଆଉ କଅଣ ? କଥା କହିଲେ, କାନ୍ଦ ଆସେ।"

ଲକ୍ଷ୍ମୀର କଣ୍ଠସ୍ୱର ଶୁଣି ତାର ମା ସେଠାକୁ ଦୌଡ଼ି ଆସିଲେ, "କଣ ଲୋ ଲକ୍ଷ୍ମୀ, ହେଲା କଅଣ ?"

ଲକ୍ଷ୍ମୀ କହିଲା, "ହେବ ଆଉ କ'ଣ ? ତୁମର ସୁନା ବହୂର ଏବେ ଦାସୀ ହେବାକୁ ହେଲା। ମା ! ମୋର ଏତେ ସହି ହେବ ନାହିଁ। ତୁମେ ତୁମର ବହୂକୁ ନେଇ ରହ, ମୁଁ ମୋର କପାଳ ନେଇ ବାହାର ହୁଏ।"

ଲକ୍ଷ୍ମୀ ଏକାଥରକେ କାନ୍ଦି ପକାଇଲା। କନ୍ୟାର କାନ୍ଦ ଦେଖି ମାଆର ମନରେ ବଡ଼ କଷ୍ଟ ହେଲା। ସେ ଭାବିଲେ, ବହୂ ତାହାକୁ କଣ ଟାଣ କଥା କହିଛି। ବହୂ ପ୍ରତି ରାଗ କରି ଧମକାଇ କହିଲେ, "ଦେଖ ବହୂ, ତୋର ବଡ଼ ଖରାପ ଦେଖୁଛି। ସବୁ ହୋଇ ଏହି ଦୁଇଦିନ ହେଲା ଆସିଛୁ, ଏହା ମଧ୍ୟରେ ଏତେ ଗୁଣ ବାହାର ହେଲା। ମୁଁ ତୋତେ ନେଇ ସ୍ୱର୍ଗ ପାଇବି ନାହିଁ। ମୋର ସାତଟା ନୁହେଁ, ପାଞ୍ଚଟା ନୁହେଁ, ଗୋଟିଏ ବୋଲି ଝିଅ, ତା ସଙ୍ଗରେ ଏପରି ବ୍ୟବହାର କଲେ ଚଳିବ ନାହିଁ ଲୋ ମା।"

ଦୁଃଖରେ ଶୈଳଜାର ଛାତି ଫାଟି ଯିବାକୁ ଲାଗିଲା। ମନୋବେଦନାରେ କାନ୍ଦି କାନ୍ଦି ଶାଶୁ ପାଖରେ କହିଲା, "ମୁଁ ତ ଇମିତି କିଛି କହି ନାହିଁ ଗୋ ?"

ଲକ୍ଷ୍ମୀ – ଆଉ କହିବୁ କଅଣ ? ଏବେ ଦୁଇ ଗୋଇଠା ଦେବାକୁ ବାକି ଅଛି।

ଶୈଳ – ମୁଁ ବୁଝି ପାରି ନାହିଁ ବୋଲି କ'ଣ କହୁଁ କହୁଁ କହି ପକାଇଛି। ମୋତେ କ୍ଷମା କର।

ଲକ୍ଷ୍ମୀ – ନା, ତୁ ଆଉ କିଛି ବୁଝୁନାହୁଁ, କଞ୍ଚା ପିଲାଟାଏ, ଆଉ କ'ଣ ! ଦେଖିଲୁ ମା, ବାହାନା ଟା – 'ମତେ କ୍ଷମା କର' – ଥଟ୍ଟା ହେଲା, ଇଏ ମା' ଦୁଇ ମାସ ଛଅ ମାସ ନୁହେଁ, ଏହି ଦୁଇ ଦିନରେ ହିଁ ଏତେ ଗୁଣ।

ମାତା କନ୍ୟାର ସଙ୍ଗରେ ଯୋଗ ଦେଲେ। କହିଲେ, "ମୋର କପାଳ ଆଉ କଅଣ ? ଝିଅର ବିଭା ଦେଲି ତାହାର ଏହି ଦଶା, ପୁଣି ପୁଅର ବିଭା ଦେଲି ତାହାର ଏହି ଦଶା, ପୁଣି ପୁଅର ବିଭା ଦେଇ ବୋହୂ ଆଣିଲି, ତାର ଏହି ଦଶା। କପାଳରେ ପାଉଁଶ ଦେଇ ଆସିଥିଲି, ସେୟା ଅନ୍ୟର ଦୋଷ ଦେବି କଅଣ। କହେଁ ଲକ୍ଷ୍ମୀ ! ତୁ ତାକୁ କୌଣସି

କଥା କହିବୁ ନାହିଁ। ସେ ଯାର ପୁତ୍ରବଧୂ, ସେ ଦେଖି ଶୁଣି ଆଣିଛନ୍ତି, ସେ ହିଁ ଭୋଗ କରନ୍ତୁ।" ବାଳିକା ଶୈଳଜାର ପ୍ରାଣରେ ଆଉ ସହିଲା ନାହିଁ, ସେ ଭାବିଥିଲା, ଶାଶୁ ଯେତେବେଳେ ଆସିଛନ୍ତି, ସେ ସେତେବେଳେ ଅବଶ୍ୟ ସୁବିଚାର କରିବେ, ନଣନ୍ଦ ଯାହା କରୁ, ଶାଶୁ ବହୂର ଆଡ଼କୁ ଚାହିଁବେ, କିନ୍ତୁ ଫଳରେ ଏଇଟା ହେଲା। ଶୈଳଜା ମୁଣ୍ଡ ଢ଼ାଙ୍କି ନୀରବରେ କାନ୍ଦିବାକୁ ଲାଗିଲା।

ଲକ୍ଷ୍ମୀ ସେତେବେଳେ ସଜାଇ ଲଗାଇ ମା ପାଖରେ କହିଲା ଯେ, ବହୂ ତାହାକୁ କହିଛି, ତୁ ପ୍ରତ୍ୟହ ମୋତେ ଅଳଙ୍କାର ପିନ୍ଧାଇ ଦେ, ମୋର ଲୁଗା କାଚି ଦେ, ବାଳ ବାନ୍ଧି ଦେ, ମୁଁ ତତେ ମାସରେ ମାସରେ କିଛି ମାସହରା ଦେବି।

କ୍ରମେ ମା' ଝିଅ ଏହି କଥା ନେଇ ବହୂକୁ ମନ ଅନୁଯାୟୀ ଅନେକ ତିରସ୍କାର କଲେ। ତା'ପରେ କର୍ତ୍ତାଙ୍କ କାନରେ ଯାଇ କଥା ଉଠିଲା, କର୍ତ୍ତା ମଧ୍ୟ କହିଲେ, "ବହୂମାଁ! ଏହା ତ ତୋର ବଡ଼ ଅନ୍ୟାୟ।"



# ତୃତୀୟ ପରିଚ୍ଛେଦ

"ହଜାର ଭଲ କରିବ ପଛକେ
ଖଳ ଛାଡ଼େ ନାହିଁ ସ୍ୱଭାବ ଦୋଷ,
ଦୁଧ କଦଳୀରେ ପୋଷ ପଛେ ସାପ
ତଥାପି ଛାଡ଼ିବ ନାହିଁ ତା ବିଷ।"

ଲକ୍ଷ୍ମୀର ଗୁଣ କେତେ କହିବ। ପଣ୍ଡା ଘରର ସୁଶୀଳାର ବିବାହ, ସବୁ ଘରେ ଯାର ତାର ନିମନ୍ତ୍ରଣ ହୋଇଛି। ଲକ୍ଷ୍ମୀର ମା କହିଲେ, "ଲକ୍ଷ୍ମୀ! ପଣ୍ଡା ଘରୁ ନିମନ୍ତ୍ରଣ ଆସିଛି। ଯିବୁ ନାହିଁ?" ଲକ୍ଷ୍ମୀ ମୁହଁ ବୁଲେଇ କହିଲା, "ନା।" ମା କହିଲେ, "କାହିଁକି? ନିମନ୍ତ୍ରଣ ହୋଇଛି, ଯିବୁ ନାହିଁ କାହିଁକି? ସଭିଁଏ ତ ଯାଉଛନ୍ତି।"

ଲକ୍ଷ୍ମୀ – ମୁଁ କେଉଁ ପୋଡ଼ା ମୁହଁରେ ସେଠାକୁ ଯିବି? ସବୁ ଘରର ଝିଅବୋହୂମାନେ ଅଷ୍ଟ ଅଳଙ୍କାର ପିନ୍ଧି ଆସୁଛନ୍ତି; ମୁଁ ଛିଣ୍ଡା କନ୍ଥା ପିନ୍ଧିଗଲେ, ମୋତେ ଦେଖି ସମସ୍ତେ ଆଖିଠାରି ହସିବେ। ମୋର ଯାଇ ଲାଭ ନାହିଁ।

ହାତରେ କେତେ ପଟ କାଚର ଚୁଡ଼ି ବ୍ୟତୀତ ଲକ୍ଷ୍ମୀର ଖଣ୍ଡିଏ ସୁଦ୍ଧା ସୁନା ଅଳଙ୍କାର ନଥିଲା, ସବୁ ଶାଶୁଘରେ କାଢ଼ି ରଖିଥିଲେ। ପିତାଙ୍କର ସଂସାର ସଙ୍ଗତି ଥିଲେ କଣ ହେବ! ସେ ଟଙ୍କା ଭଙ୍ଗାଇ କନ୍ୟାର ଅଳଙ୍କାର ପ୍ରସ୍ତୁତ କରାଇଦେବେ, ଏପରି ପ୍ରକୃତିର ଲୋକ ନଥିଲେ। ଯେଉଁ ଟଙ୍କା ଦେଇ ଅଳଙ୍କାର ଚଢ଼ାଇବେ, ସେହି ଟଙ୍କାରୁ ବର୍ଷକୁ ବର୍ଷ ତାର ସୁକୀ ସୁଧ ମିଳିବ। ବସ୍ତୁତଃ ଲକ୍ଷ୍ମୀକୁ ଅଳଙ୍କାର ପିନ୍ଧିବା ମଧ୍ୟ ତ୍ୟାଗ କରିବାକୁ ପଡ଼ିଥିଲା। ଲକ୍ଷ୍ମୀର ମାତା ତାର ଏହି ମନୋଦୁଃଖର କଥା ଶୁଣି ବଡ଼ କଷ୍ଟ ପାଇଲେ ଏବଂ କନ୍ୟାର ଶାଶୁକୁ ଗାଳି ଫାଳି ଦେଇ ଦୁଃଖ ଲାଘବ କଲେ। ଶୈଳଜା ସେ ସ୍ଥାନରେ ଉପସ୍ଥିତ ଥିଲା, ଅତି ସରଳ ଚିତ୍ତରେ କହିଲା, "ନାନୀ! ତୁମ୍ଭେ ମୋର ଅଳଙ୍କାର ଗୁଡ଼ିକ ପିନ୍ଧି ଯାଅନା।"

ଲକ୍ଷ୍ମୀର ମାତା କହିଲେ, "ସେୟା ତ, ଯାଉ ନାହିଁ କାହିଁକି? ଦେ ବହୂ ଅଳଙ୍କାର ଗୁଡ଼ିକ ବାହାର କରି ଦେ।"

ଲକ୍ଷ୍ମୀର ଅନ୍ତରରେ କେବଳ "କୁ"(ମନ୍ଦ)! ସେ କହିଲା, "ନା, ମୋର ଯାଇ ଲାଭ ନାହିଁ। ପରର ପାଖରୁ ଧାଁର କରି ଶେଷରେ କେତେ କଥା ଶୁଣିବାକୁ ହେବ।"

ଶୈଳଜା କହିଲା, "ସେୟା କଣ ନାନୀ। ମୋର ଜିନିଷ ତୁମର। ପରର ହେଲା କିପରି? ମୁଁ କଣ ଆଉ ପର? ମୋର ହେଲେ ଯାହା ତୁମର ହେଲେ ତାହା, ଆସ ତୁମ୍ଭଙ୍କୁ ଅଳଙ୍କାର ଗୁଡ଼ିକ ପିନ୍ଧାଇ ଦିଏଁ।"

ଶୈଳଜା ବାକ୍ସ ଖୋଲି ଗୋଟି ଗୋଟି କରି ସମଗ୍ର ଅଳଙ୍କାର ଲକ୍ଷ୍ମୀକୁ ପିନ୍ଧାଇ ଦେଲା। ନିଜର ହାତରେ ଯେଉଁ ଦୁଇଯୋଡ଼ା ବଳା ଥିଲା, (କେବଳ ମାତ୍ର ଚୂଡ଼ି କେତେପଟ ଛାଡ଼ି) ତାହା ମଧ ଖୋଲି ପିନ୍ଧାଇଦେଲା। ଲକ୍ଷ୍ମୀ ଉଜ୍ଜଳ ଶ୍ୟାମବର୍ଣ୍ଣା, ଶ୍ୟାମାଙ୍ଗରେ ଅଳଙ୍କାର ବଡ଼ ଶୋଭା ପାଏ; ଲକ୍ଷ୍ମୀର ଅଙ୍ଗରେ ମଧ ଶୋଭା ପାଇଥିଲା, କିନ୍ତୁ ତାର ମୁହଁ ଖଣ୍ଡିକ ଭାର ଭାର ରହିଲା। ଭାତୃ-ବଧୂର ଅଳଙ୍କାର ପିନ୍ଧିଲି, ସେ କେଜାଣି ମନେ ମନେ କେତେ କଣ କହୁଛି। ଏହିସବୁ ଚିନ୍ତାରେ ଲକ୍ଷ୍ମୀର ମନ ବିଷର୍ଣ୍ଣ ରହିଲା। ଯାର ମନ ମଧରେ କାଳିମା, ତା'କୁ ହୀରାମଣି ଦେଇ ଢ଼ାଙ୍କି ରଖିଲେ ସୁଦ୍ଧା ଲୋକେ ସୁନ୍ଦର ଦେଖନ୍ତି ନାହିଁ। ଯାହା ହେଉ ଲକ୍ଷ୍ମୀ ସଜବାଜ ହୋଇ ନିମନ୍ତ୍ରଣକୁ ଗଲା।

ନିମନ୍ତ୍ରଣରୁ ଫେରି ବାଟରୁ ଡ଼ାକି ଡ଼ାକି ଆସୁଛି, "ଏ ବହୂ! ଏଇନେ ତୋର ଅଳଙ୍କାର ପତର! ଦେଖ୍ ଏକା, କୌଣସି କିଛି ଭାଙ୍ଗିଚୂରି ନଷ୍ଟ ହୋଇଛି କି ନାହିଁ?" କହି କହି ଘରେ ଢୁକି ବଳା ଦୁଇପଟ ଶୈଳଜାର ସାମନାରେ ରଖିଲା। ଶୈଳଜା ହସି ହସି କହିଲା, "କାହିଁକି ନାନୀ ଥାଉନା। ତୁମ୍ଭେ ନହେଲେ ଦୁଇଦିନ ପିନ୍ଧ। ତୁମ୍ଭଙ୍କୁ କିମିତି ସୁନ୍ଦର ଦିଶୁଛି। ଆହା! ମାଳିମାଳଟି ତୁମ୍ଭର ବେକକୁ କେମିତି ମାନିଛି। ମାଳିମାଳଟି ଆଜିଠାରୁ ତୁମ୍ଭେ ପିନ୍ଧ।" ଲକ୍ଷ୍ମୀର ବାସନା ପୂର୍ଣ୍ଣ ହେଲା ନାହିଁ। ଅନେକ ବେଳରୁ ତାର ରସନା ନିରସ୍ତ ଥିଲା। ସେ ଭାବିଥିଲା, ଏହି ସମସ୍ତ ଅଳଙ୍କାର ଘେନି ବହୂର ସଙ୍ଗରେ ଟିକିଏ କଳହ କରିବ, ଆଉ ବହୂ ଯେଉଁ ତାହାକୁ ଅଳଙ୍କାର ଧାର ଦେଇଥିଲା, ସେଥିରେ ସେ ବହୂର ଉପରେ କିଛି ମାତ୍ର ସନ୍ତୁଷ୍ଟ ହୋଇନାହିଁ। ବରଂ ମନେ ମନେ ବିଶେଷ ଈର୍ଷାନ୍ୱିତ ହୋଇଥିଲା। ବହୂ ତାକୁ ଅଳଙ୍କାର ଧାର ଦେବ, ଏହିଟା ବଡ଼ ଗ୍ଲାନିର କଥା। କି ଉପାୟରେ ବହୂର ଅଧିକାରରୁ ଅଳଙ୍କାର ଗୁଡ଼ିକ ସ୍ଥାନାନ୍ତରିତ କରିପାରିବ, ଲକ୍ଷ୍ମୀ ତାହାର ଅନ୍ୱେଷଣ କରୁଥିଲା। ଖଳର ପ୍ରକୃତି ଅତି ଅଦ୍ଭୁତ! ଶୈଳଜାର କଥାରେ କିଛି ମାତ୍ର ଛିଦ୍ର ନ ପାଇ ଲକ୍ଷ୍ମୀ ମନେ ମନେ ଭାବିଲା, ବହୂ ବଡ଼ ଋଲାକ୍। ଅବଶ୍ୟ ଅଳଙ୍କାର ଗୁଡ଼ିକ ଦେଇ ମନେ ମନେ ତାର ରାଗ ହୋଇଛି, ତାହା ବାହାରକୁ ପ୍ରକାଶ କରୁନାହିଁ। ଯା'ର ଯେଉଁପରି ମନ, ସେ ପରକୁ ମଧ ସେହିପରି ଭାବେ। ଯାହା ହେଉ, ଲକ୍ଷ୍ମୀର ବହୂକୁ କିଛି କୁହା ହେଲାନାହିଁ। ଅଗତ୍ୟା ନିରାଶ ହୋଇ ବିବାହ ଘରର ଗଳ୍ପ କରିବାକୁ ଲାଗିଲା।

ଶୈଳଜା ନଣନ୍ଦର ମୁହଁରୁ କେବେହେଲେ ଭଲଭାବରେ ଆଳାପ ଶୁଣିନାହିଁ।

ଆଜି ତାହା ମୁହଁରୁ ବିବାହ ଘରର କଥା ଗୁଡ଼ିକ ଶୁଣି ସେ ବଡ଼ ସନ୍ତୁଷ୍ଟ ହେଲା। ପ୍ରଫୁଲ୍ଲ ଚିତ୍ତରେ ସେ ମଧ୍ୟ ନଣନ୍ଦ ସଙ୍ଗରେ ଆଳାପ କରିବାକୁ ଲାଗିଲା। ଅନେକ କଥା ପରେ ଶୈଳଜା କହିଲା, "ନାନୀ, ତୁମ୍ଭର ସ୍ୱାମୀ ଖୁବ୍ କଡ଼ା ଲୋକ, କିନ୍ତୁ ତୁମ୍ଭର ନାମଟି ଥରେ ସୁଦ୍ଧା ଧରନ୍ତି ନାହିଁ, ଏହା ତାଙ୍କର କିମିତି ରୀତି ?"

ଲକ୍ଷ୍ମୀ ସେଥିରେ ବିରକ୍ତ ହୋଇ ଉତ୍ତର କଲା, "ରଖି ଦେ' ଭାଇ ? ଇମିତି ବଡ଼ ଲୋକର ମୁହଁରେ ନିଆଁ।"

ଶୈଳ - ଛି ! ଇମିତି କଥା କହି ଯୋଗାଏ ?ସ୍ୱାମୀ ପରମ ଗୁରୁ। ତୁମ୍ଭେ ସେଠାରେ ଥାଅ ନାହିଁ ବୋଲି ତୁମ୍ଭଙ୍କୁ ଭଲପାନ୍ତି ନାହିଁ ବା ସ୍ନେହ କରନ୍ତି ନାହିଁ। ଥିଲେ ଅବଶ୍ୟ ସ୍ନେହ କରନ୍ତେ। ତାଙ୍କର ଏତେ ଟଙ୍କା ପଇସା, ତୁମ୍ଭେ ଖୁବ୍ ସୁଖରେ ରହିପାରନ୍ତ।"

ଲକ୍ଷ୍ମୀ - "ଇମିତି ଟଙ୍କା ପଇସାର ମୁହଁରେ ନିଆଁ। ମୁଁ ଭିକ୍ଷା ମାଗି ଖାଏଁ ସେୟା ବି ଭଲ, ତଥାପି ସେ ପୁରୀକୁ ଯିମିତି ଯିବାକୁ ନ ହୁଏ।"

ଶୈଳ - "ନା ନାନୀ, ଇମିତି କଥା କହନାହିଁ। ଆମେମାନେ ସ୍ତ୍ରୀଲୋକ, ପୁରୁଷର ଦାସୀ। ସ୍ୱାମୀ ଆମ୍ଭର ଦେବତା, କାୟୋମନବାକ୍ୟରେ ସ୍ୱାମୀଙ୍କର ପଦସେବା କରିବା ହିଁ ସ୍ତ୍ରୀଲୋକର ଧର୍ମ। ଯେଉଁ ସ୍ତ୍ରୀ ସ୍ୱାମୀର ସେବା ନକରେ, ସେହି ସ୍ତ୍ରୀର ଜୀବନ ବିଫଳ। ସ୍ୱାମୀ ଭଲ ହୁଅନ୍ତୁ ବା ମନ୍ଦ ହୁଅନ୍ତୁ, ସେ ଆମ୍ଭର ପରମ ଗୁରୁ। ତାହାଙ୍କ ପ୍ରତି ଅଭକ୍ତି କଲେ, ମହାପାପ ହୁଏ। ସ୍ୱାମୀ ଗୃହରେ ସୁଖରେ ଥାଉଁ ବା ଦୁଃଖରେ ଥାଉଁ, ସେୟା ଆମର ସ୍ୱର୍ଗ, ସ୍ୱାମୀଙ୍କର ଘର ଆମ୍ଭର ନିଜର ଘର; ସେଠାରେ ଆମେ ସ୍ୱାଧୀନ, ଅନ୍ୟ ସ୍ଥାନରେ ହଜାର ସୁଖରେ ଥିଲେ ମଧ୍ୟ ପରାଧୀନ, ପରର ମୁହଁ ଉହିଁ ରହିବାକୁ ହୁଏ। ଦେଖ, ରାମଚନ୍ଦ୍ର ବନକୁ ଗଲେ, ସୀତା ଦେବୀ ରାଜଭୋଗ ତ୍ୟାଗ କରି ତାଙ୍କ ସଙ୍ଗରେ ବନବାସିନୀ ହେଲେ।"

ଏଥର ଲକ୍ଷ୍ମୀକୁ ଆଉ ପାଏ କିଏ ? ଲକ୍ଷ୍ମୀ ଛିଦ୍ରାନୁସନ୍ଧାନ କରୁଥିଲା। ଭାତୃ-ବଧୂ ସବୁ ହୋଇ ଏହି ଦୁଇମାସ ହେଲା ଆସି ଗୁରୁ ମହାଶୟଙ୍କ ପରି ତାକୁ ଉପଦେଶ ଦେଇ ବସିଲା। ରାଗରେ ଲକ୍ଷ୍ମୀର ଅଧର କମ୍ପିବାକୁ ଲାଗିଲା। ଆଖି ଭୃହଁର ଭଙ୍ଗି କରି ଗରଗର କରି କହିଲା, "ହେଲା, ହେଲାଲୋ, ଆଉ ତୋର ଗୁରୁଗିରି ଫଳିବାକୁ ହେବନାହିଁ - ତୁ ଯିମିତି ବହି ପଢ଼ି ପଣ୍ଡିତ ହୋଇପଡ଼ିଛୁ। ଆମ୍ଭେ ଗୃହସ୍ଥର ଝିଅ ଏତେ କଥା ବୁଝୁନାହିଁ, ସେସବୁ ବିଦ୍ୟା ବାପର ଘରକୁ ଯାଇ ଚଳାଇବୁ। ଇଏ ମା ! କଥାର ରକମ ଦେଖ। ମୁଁ ପରର ଝିଅ, ପରର ମୁହଁ ଉହିଁ ବଞ୍ଚେ। ମୁଁ ତାଙ୍କର ଅଧୀନ, ତାଙ୍କର ଭାତ ଲୁଗାର ଦାସୀ !

ଆଲୋ, ମୋର ରାଜରାଣୀ ଆଉ କ'ଣ ? ତୋର ଖଣ୍ଡେ ଦି'ଖଣ୍ଡ ଅଳଙ୍କର ଦେହରେ ଦେଇଛି, ସେଥିପାଇଁ ଏତେ କଥାର ଘଟା। ଏହିନେ' ତୋର ଅଳଙ୍କାର। ଏତେ ଅହଙ୍କାର ଭଲ ନୁହେଁ, ଚୂଡ଼ି ସିନ୍ଦୂରର ଅହଙ୍କାର। ଏତେ ସହିବି ନାହିଁ।" କହୁଁ କହୁଁ ଧଡ଼ପଡ଼ କରି ଲକ୍ଷ୍ମୀ ଦେହର ଅଳଙ୍କାର ଗୁଡ଼ିକ ଖୋଲି ଶୈଳଜାର ସମ୍ମୁଖରେ ଫିଙ୍ଗି ଫିଙ୍ଗି ଦେବାକୁ ଲାଗିଲା। ଧଡ଼ପଡ଼ କରି ଖୋଲିବାକୁ ଯାଇ କାନର ଗଣ୍ଠିଆ ତାର ହାତରେ ବିନ୍ଧ ହୋଇ ରକ୍ତ ଗଡ଼ିବାକୁ ଲାଗିଲା। ବ୍ୟଥା ପାଇ ଲକ୍ଷ୍ମୀର ରାଗ ଆହୁରି ବଢ଼ିଲା, ଅଳଙ୍କାର ଗୁଡ଼ିକ ଜୋର ଜୋର କରି ଶୈଳଜାର ଦେହରେ ଫିଙ୍ଗି ମାରିବାକୁ ବସିଲା। କଳି ଶୁଣି ଲକ୍ଷ୍ମୀର ମା' ସେଠାକୁ ଦୌଡ଼ି ଆସିଲେ। ମାଆକୁ ଦେଖି ଲକ୍ଷ୍ମୀ ନାକ ଝାଡ଼ି ସୁରସୁର କରି କାନ୍ଦି କାନ୍ଦି କହିଲା, "ମା', ମୁଁ ସେତେବେଳେ ତୁମ୍ଭଙ୍କୁ କହୁଥିଲି, 'ମୋର ଅଳଙ୍କାର ପିନ୍ଧି ଲାଭ ନାହିଁ।' ମାଇକିନିଆ ମତେ କହୁଛି କଣ ନା 'ତୁ ପରର ଖାଇ, ପରର ପିନ୍ଧି ବଞ୍ଚୁଛୁ।' ହା ବିଧାତା ! ମୋ' କପାଳରେ ଏତେ କଷ୍ଟ ଥିଲା। ଆଉ ପ୍ରାଣଟା ଯଦି ଯାଆନ୍ତା ତେବେ ମୁଁ ବଞ୍ଚନ୍ତି।"

ଲକ୍ଷ୍ମୀ ବକ୍ଷରେ କରାଘାତ କରିବାକୁ ଲାଗିଲା। କନ୍ୟାର ଭାବ ଦେଖି ମାଆର ପ୍ରାଣରେ ମଧ ଆଘାତ ଲାଗିଲା। ସେ ପାଟି କରି କହିଲେ, "ଦେଖ୍ ବହୂ, ମୁଁ ସବୁବେଳେ ଦେଖୁଛି, ତୋ'ର ଯେତେ ବଡ଼ ମୁହଁ ନୁହେଁ, ତେତେ ବଡ଼ କଥା; ସେହି ଟୋକୀର ଟିକିଏ ଭଲ ଦେଖି ପାରୁନାହୁଁ। ଆହା ! ତୋର ଅଳଙ୍କାର ପିନ୍ଧିବାର ସଧ ମୁଁ ଘୁଞ୍ଚାଇ ଦେଉଛି।" କହି ଶାଶୁ ଠାକୁରାଣୀ ପୁତ୍ରବଧୂରସମସ୍ତ ଅଳଙ୍କାର ନେଇ ସିନ୍ଦୁକରେ ବନ୍ଦ କରି ରଖିଲେ। ଲକ୍ଷ୍ମୀର ମନସ୍କାମନା ସିଦ୍ଧ ହେଲା, ସେ ଖାଲି ଅଳଙ୍କାର ଗୁଡ଼ିକ ନେଇ ସନ୍ତୁଷ୍ଟ ହେଲା ନାହିଁ। ଶୈଳଜା ବାପଘରରୁ କେତେ ଖଣ୍ଡି ବହି ଆଣିଥିଲା, କାମଦାମରେ ଟିକିଏ ଅବସର ପାଇଲେ ଟିକିଏ ଟିକିଏ ପଢୁଥିଲା। "ଗୃହସ୍ଥ ଘରର ବହୂର ପୁଣି ଲେଖାପଢ଼ା ! ପଢ଼ିବାକୁ, ଶୁଣିବାକୁ ହୁଏତ ସହରକୁ ଯାଇ ବିବି ସାଜି ବସ୍ ଯା", କହି ବହିଗୁଡ଼ିକ କୁଣ୍ଡାଇ ନେଇ ଲକ୍ଷ୍ମୀ ଦୂର କରି ଫିଙ୍ଗିଦେଲା।

ଶୈଳଜା କଥାଟିଏ ସୁଦ୍ଧା କହିଲା ନାହିଁ। କହିବ କ'ଣ ? ଦେଖି ଶୁଣି ସେ ଏକାଥରକେ ହତବୁଦ୍ଧି ହୋଇପଡ଼ିଛି।



# ଚତୁର୍ଥ ପରିଚ୍ଛେଦ

"ଦୁର୍ବା ବନେ ବାଘ ଖାଇବ,

ବିଧି ଯାହାକୁ ବାମ,

କଣ୍ଠ ଫୁଲମାଳା ତା' ପକ୍ଷେ

ହେବ ସର୍ପର ସମ ।"

ଶୈଳବାଳାର ଦୁଃଖର ସୀମା ନାହିଁ । ମାଆ ବାପାଙ୍କର ଏତେ ଆଦରର କନ୍ୟା, ପାଞ୍ଚ ଭାଇଙ୍କର ଏତେ ସ୍ନେହର ଭଉଣୀ, ଲହୁଣୀର ପୁତଳୀ ଶୈଳବାଳାର ଏବେ ଯନ୍ତ୍ରଣାର ଅବଧି ନାହିଁ । ଏହି ଦ୍ୱାଦଶ ବର୍ଷ କାଳ ମାଆର ବକ୍ଷରେ ବକ୍ଷରେ ପରମ ସୁଖରେ ଥିଲା, କେବେହେଁ ଦୁଃଖର ବାର୍ତ୍ତା ଜାଣେ ନାହିଁ; କେହି କେବେ ତାକୁ ଉଚ୍ଚ କଥା ମଧ୍ୟ କହି ନାହିଁ; ହାସ୍ୟ ମୁହଁ ଭିନ୍ନ କଳାମୁହଁ ସେ କେବେହେଁ ଦେଖି ନାହିଁ । ମାଆ, ବାପା, ଭାଇଙ୍କର ତ କଥା ନାହିଁ, ଶତ୍ରୁମାନେ ମଧ୍ୟ ଶୈଳବାଳା ପ୍ରତି କେବେହେଁ ରୁକ୍ଷ ଆଖିରେ ଚାହିଁ ନାହାନ୍ତି; ଆଉ ଏହି ଛଅମାସ କାଳ ମା' ବାପାଙ୍କର କୋଳ ଛାଡି, ଏହି ଦୂର ଦେଶରେ କାରାଗାରରେ ଆବଦ୍ଧ ହୋଇଛି । ଏହି ଛଅମାସ ମଧ୍ୟରେ ତାହାକୁ ଆଦର କରି କେହି ଦୁଇଟି କଥା କହି ନାହିଁ । ଏହି ଛଅମାସ କାଳ ସେ ସାହସ କରି କାହାରିଠାରେ ଗୋଟାଏ ମନର କଥା କହି ପାରି ନାହିଁ । ବାଳିକାର ହୃଦୟରେ ଅହର୍ନିଶ କେବଳ ତୁଷର ନିଆଁ ଜଳୁଥିଲା ।

ମନ ଦୁଃଖରେ ଯେ ଶୈଳଜା ଟିକିଏ ବସି କାନ୍ଦିବ, ଏପରି ଅବସରଟିକ ମଧ୍ୟ ତାର ନ ଥିଲା । ସମସ୍ତ ଦିନଯାକ ତାକୁ ସଂସାରର କାମରେ ଖଟିବାକୁ ହୁଏ । ତା'ର ଶାଶୁଘରେ ଲୋକବାକ ତେତେ ଅଧିକ ନ ଥିଲେ, କେବଳ ଶ୍ୱଶୁର, ଶାଶୁ ଆଉ ନଣନ୍ଦ; ସ୍ୱାମୀ କଟକରେ ରହି ପାଠ ପଢ଼ନ୍ତି । ଏହି ସାମାନ୍ୟ ସଂସାରରେ କାମ ପାଇଁ ଚାକର ଚାକରାଣୀ ରଖି ଅର୍ଥ ବ୍ୟୟ କରିବାକୁ ସାମନ୍ତ ମହାଶୟ କୌଣସି ମତେ ରାଜି ନୁହନ୍ତି । ଆଗେ ତା'ଙ୍କର ଗୃହିଣୀ ସମସ୍ତ କାମ କରୁଥିଲେ, ଏବେ ସମସ୍ତ ଭାର ବଧୂର ଉପରେ ପଡିଛି । ଏପରି ସାମାନ୍ୟ ସଂସାରରେ କାମଦାମ କରିବାକୁ ଶୈଳଜାର କଷ୍ଟ ମଧ୍ୟ ହେଉ ନ ଥିଲା । ସେ ପିଲା ବେଳରୁ ବେଶ୍ କାମଦାମ ମଧ୍ୟ ଶିଖିଛି; କିନ୍ତୁ ସଂସାର ଛୋଟ ହେଲେ କଣ ହେଲା, ଶୈଳଜାର ପରିଶ୍ରମର ବିରାମ ନାହିଁ । ଶୈଳଜା ଯଦି କେତେବେଳେ ଟିକିଏ ବିଶ୍ରାମ କରି ବସିବ, ସେହିକ୍ଷଣି ତା'ର ଶାଶୁ କି ନଣନ୍ଦ ଆସି କାମ ଥାଉ ବା ନ ଥାଉ କେତେ ଅନର୍ଥକ କାମ ଦେଖାଇ ତା'ର ବିଶ୍ରାମ ଭଙ୍ଗ କରନ୍ତି ।

ଶୈଳଜାର ନଣନ୍ଦ ବେଶ୍ ସମର୍ଥା ଯୁବତୀ: ଶରୀରରେ ତା'ର ତିନିଗୁଣ ବଳ ହେବ: କିନ୍ତୁ ବହୁ ଆସିବା ଅବଧି ସେ ଘରର କୁଟା ଖଣ୍ଡିଏ ମଧ ଦିଖଣ୍ଡ କରେ ନାହିଁ । ତାର ନା କଣ ବାତ ବେରାମ ଥିଲା । କାମଦାମର କଥା ହେଲେ ତାଙ୍କ ଦେହରେ ବେଦନା ହେଉଥିଲା । ଲକ୍ଷ୍ମୀ ଏବେ ବେଶ୍ ଗୋଟା ବିବି ହୋଇ ରହିଛି । ଖାଇବା ସମୟରେ ତା'ର ଘରେ ଯାଇ ଭାତ ଦେଇ ଆସିବାକୁ ହୁଏ, ଆଞ୍ଚୋଇବାର ପାଣି ଦେବାକୁ ହୁଏ, ବିଛଣା ପାରି ଦେବାକୁ ହୁଏ: କିନ୍ତୁ ପଡା ବୁଲିବା ସମୟରେ ଲକ୍ଷ୍ମୀର କୌଣସି ରୋଗ ପୀଡା ନ ଥାଏ । ଦିନ ଯାକ ପଡାରେ ରହୁଥିଲା । ଏପରି ସମର୍ଥ ଝିଅ ପଡା ପଡାରେ ବୁଲି ବୁଲେ । ସେଥିରେ ଯେ କେହି କିଛି କହୁ ନ ଥିଲେ, ଏପରି ନୁହେଁ, ତେବେ ଲକ୍ଷ୍ମୀ ଓ ତା'ର ମାଆର ମୁହଁର ଭୟରେ କେହି କିଛି କହିବାକୁ ସାହସ କରୁ ନ ଥିଲେ ।

ଏତେ କରି ସୁଦ୍ଧା ଶୈଳଜା ଯଦି ଶାଶୁ ଶ୍ୱଶୁରଙ୍କର ମନ ପାଆନ୍ତା, ତାହା ହେଲେ ଦୁଃଖ ଥିଲା କଅଣ ? ମନ୍ଦ ଛଡା ଭଲରେ କେହି ତାହା ଆଡକୁ ଚାହୁଁ ନ ଥିଲେ, ତେବେ ଶ୍ୱଶୁର ସମୟ ସମୟରେ ବହୁ ମାଆକୁ ଗୋଟାଏ ଦୁଇଟି ମିଠା କଥା କହୁଥିଲେ: କାହିଁକି ନା, ସେ ପରିଷ୍କାର ପରିଚ୍ଛନ୍ନତା ବେଶ ଭଲ ପାଉଥିଲେ । ଶୈଳର କାମଦାମଗୁଡିକ ଖୁବ୍ ପରିଷ୍କାର ପରିଚ୍ଛନ୍ନ ଥିଲା । କରିବାକୁ ହେଉଥିଲା, ଜିନିଷପତ୍ର ଗୁଡିକ ସଜାଇ ରଖିବାକୁ ହେଉଥିଲା, କିନ୍ତୁ ବଧୂ ଘରକୁ ଆସିବା ଅବଧି ତାହାଙ୍କୁ ଆଉ ଏସବୁ କିଛି କରିବାକୁ ହୁଏ ନାହିଁ । ସେ ଏବେ ଦେଖନ୍ତି ତାଙ୍କ ଅପେକ୍ଷା ତାଙ୍କ ପୁତ୍ରବଧୂ ଅଧିକତର ପରିଷ୍କୃତ ଓ ପରିଚ୍ଛନ୍ନ; ଆହୁରି ମଧ ସେ ଏହି କେତେ ମାସ ହେଲା, ବଧୂର ହାତର ରନ୍ଧା ଖାଉଛନ୍ତି, କୌଣସି ଦିନ ମନ୍ଦ ଖାଉ ନାହାନ୍ତି; ବରଂ ପୂର୍ବେ ସେ ଏପରି ଭଲ ଖାଇବାକୁ ପାଉ ନ ଥିଲେ । ତେଣୁ ସେ ଅନେକ ସମୟରେ କହନ୍ତି, "ବହୁଟି ଆଉ ଯେପରି ସେପରି ହେଉ, ରନ୍ଧା ବଢ଼ା କାମଦାମରେ ମନ୍ଦ ନୁହେଁ", କିନ୍ତୁ ଏହି କଥା ତାଙ୍କର ଗୃହିଣୀ ବା କନ୍ୟା ଶୁଣିଲେ କହନ୍ତି, ଅନେକ ଘିଅ ମସଲା ଖର୍ଚ୍ଚ କରେ ବୋଲି ବହୂର ରନ୍ଧା ଏତେ ଭଲ ହୁଏ । ଗୋଟିଏ ରନ୍ଧାରେ ଚାରିଟା ରନ୍ଧାର ଜିନିଷ ଖର୍ଚ୍ଚ କରେ । ଆଉ କାମଦାମଗୁଡିକ ବହୂ କରୁଛି ନା ? ଆମ୍ଭେ ସବୁ ସମୟରେ ପଛେ ପଛେ ଅଛୁଁ, ସେଥିପାଇଁ ସଂସାର ଚଳୁଛି; ନୋହିଲେ ବହୂ ନା ସଂସାର କରି ଦିଅନ୍ତା ।"

ଭଉଣୀମାନେ, ଅବିଶ୍ୱାସ କର ନାହିଁ । ଏପରି ଶାଶୁ ନଣନ୍ଦ ଅନେକ ଅଛନ୍ତି । ତୁମ୍ଭମାନଙ୍କ ମଧରେ ହୁଏତ କେହି କେହି ଏପରି ଶାଶୁ ନଣନ୍ଦଙ୍କ ହାତରେ ପଡିଛନ୍ତି । ଶିଖି ରଖ - ଯେତେବେଳେ ଶାଶୁ ହୋଇ ଘରେ ବହୁ ଖଟାଇବ, ସେତେବେଳେ ମନେ ପକାଇବ ଯେ ଆମ୍ଭେମାନେ ମଧ ଏକ ସମୟରେ ବହୂ ଥିଲୁଁ ।

ଯାହା ହେଉ କିଛି ଦିନ ପରେ ଶୈଳ ଗୋଟାଏ ଆପଣାର ପାଇଲା । ଏତେ ଦୁଃଖ ମଧ୍ୟରେ ସୁଦ୍ଧା ତା'ର ଗୋଟାଏ ଆରାମର ସ୍ଥଳ ମିଳିଲା: ତାର ଘର ପାଖରେ ପଣ୍ଡା ଘରେ ବିମଳା ନାମ୍ନୀ ଶୈଳଜାର ସମବୟସ୍କା ଗୋଟିଏ ଝିଅ ଥିଲା । ପୋଖରୀ ଘାଟରେ ଶୈଳର ସଙ୍ଗରେ ତା'ର ମଧ୍ୟରେ ଦେଖା ହୁଏ । ବିମଳା ଝିଅଟି ବଡ ସୁନା ଝିଅ । ଦୁଇ ଚାରି ଦିନ ଦେଖା ଶୁଣା' ପରେ ଶୈଳୀର ସଙ୍ଗରେ ତା'ର ସଖିତ୍ୱ ଜନ୍ମିଲା । ବିମଳା ଅନେକ ସମୟରେ ଶୈଳର ଘରକୁ ଆସେ, ତା'ର କାମଦାମରେ ସାହାଯ୍ୟ କରେ, ଶୈଳୀର କଷ୍ଟ ଦେଖି କେତେ ଦୁଃଖ ପ୍ରକାଶ କରେ, ତାହାକୁ ପ୍ରବୋଧ ଦିଏ, ଆପଣା ଦୁଃଖର କଥା କହେ । ଭଲ ନ ହେଲେ କଣ ଭଲ ସଙ୍ଗରେ ମିଳି ହୁଏ ?

ଦିନେ ଶାଶୁ ଠାକୁରାଣୀ ଶୈଳୀକୁ ଅନେକ ଗାଳି ଦେଇଛନ୍ତି । ଶୈଳୀ କାନ୍ଦି କାନ୍ଦି ପୋଖରୀ ଘାଟରେ ବାସନ ମାଜୁଛି, ଏହିପରି ସମୟରେ ବିମଳା ଆସି ଅତି ମିଷ୍ଟ ସ୍ୱରରେ କହିଲା, "ବହୂ, କାନ୍ଦୁଛନା କ'ଣ ? ଶାଶୁ ବୋଧହୁଏ ଗାଳି ଦେଇଛନ୍ତି ? ତୁମ୍ଭ କପାଳରେ ବିଧାତା ଏତେ ଦୁଃଖ ଲେଖିଥିଲେ ?"

ଶୈଳଜା ଆଖି ପୋଛି କହିଲା, "କଅଣ କରିବି ନାନି ? ଅଦୃଷ୍ଟର ଦୋଷ ! ତୁମେ ଅଛ ବୋଲି, ବଞ୍ଚିଛି, ନୋହିଲେ ମରି ଯାଆନ୍ତି ।"

ବିମଳା - ବହୂ' ! ତୁମ୍ଭେ ଗୋଟାଏ କାମ କରନା କାହିଁକି ? ତୁମର ମାଆ ପାଖକୁ ପତ୍ର ଲେଖ ? ତୁମ୍ଭଙ୍କୁ ସେମାନେ ନେଇ ଯାଆନ୍ତୁ; ତୁମ୍ଭେ ତାହାଙ୍କ ଘରକୁ ଚାଲିଯାଅ; ଏମାନେ ପଠେଇବାକୁ ନ ଚାହାନ୍ତୁ, ଜୋରକରି ଚାଲିଯାଅ । ଲୋକେ ମନ୍ଦ କହିବେ, ତା କେତେ ସହି ହେବ ? ଧର୍ମତ ଦେଖୁଛନ୍ତି ।

ଶୈଳ- ସେବେଳ କ'ଣ ଆଉ ଅଛି ଭଉଣୀ ? ସେମାନେ କେଉଁ ମୁହଁ ନେଇ ଏ ଘରକୁ ଆସିବେ ? ଏମାନେ ସେମାନଙ୍କୁ ଯେଉଁ ଅପମାନ ଦେଇଛନ୍ତି । ମୁଁ ମାଆବାପାଙ୍କର ନିତାନ୍ତ କୁସନ୍ତାନ । ମୋ ପାଇଁ ସେମାନେ ବି କଷ୍ଟ ପାଇ ନାହାନ୍ତି । ମୁଁ ମା'କୁ ଥରେ ପତ୍ର ଲେଖିଥିଲି । ମା କେତେ କାନ୍ଦି କାନ୍ଦି ଅନୁନୟ ବିନୟ କରି ଶ୍ୱଶୁରଙ୍କ ପାଖକୁ ପତ୍ର ଲେଖିଲେ, ପାଞ୍ଚଟା ଦିନ ପାଇଁ ସେଠାକୁ ନେଇ ଯିବାକୁ ଚାହିଁଲେ; ସେଥିରେ କିଛି ହେଲା ନାହିଁ । ତା'ପରେ ମୁଁ ଆଉ ଖଣ୍ଡିଏ ପତ୍ର ଲେଖିଥିଲି । ମୋର ନଣନ୍ଦ କିମିତି କରି ତାହା ଜାଣି ପାରିଲା । ମୁଁ ବାପ ଘରକୁ ପତ୍ର ଲେଖେଁ ବୋଲି ସମସ୍ତେ ମିଳି ମତେ ତିରସ୍କାର କଲେ । ଏବେ ଆଉ ପତ୍ର ଲେଖେଁ ନାହିଁ । ଆଉ ଲେଖି ଅବା ହେବ କ'ଣ ? କେବଳ ମାଆକୁ କଷ୍ଟ ଦେବା ମାତ୍ର ।

ଏହି କଥାଗୁଡିକ ଶୁଣି ରାଗ ଦୁଃଖରେ ବିମଳାର କାନ୍ଦ ଆସିଲା । ଛଳ ଛଳ ଆଖିରେ ସେ କହିବାକୁ ଲାଗିଲା, "ଆଃ ସେମାନଙ୍କର ପ୍ରାଣ କଣ ପାଷାଣରେ ଗଢ଼ା ? ଏପରି ଲହୁଣୀର ପିତୁଳୀ, ଏପରି ସୁନାର ବହୂକୁ ଏତେ କଷ୍ଟ ଦିଅନ୍ତି ! ପରମେଶ୍ୱରଙ୍କର ଅବା କି ବିଚାର ! ଆଚ୍ଛା ବହୂ; ତୁ ତୋର ସ୍ୱାମୀଠାକୁ ପତ୍ର ଲେଖ ନା ? ସେ ବେଶ୍ ବୁଦ୍ଧିମାନ ପିଲା, ଏତେ କଷ୍ଟର କଥା ସେ ଜାଣି ପାରିଲେ ଅବଶ୍ୟ ହିଁ ଗୋଟାଏ ସଦୁପାୟ କରିବେ ।

ଶୈଳବାଳା ବାଳିକା: ସ୍ୱାମୀଙ୍କ କଥା ଶୁଣି ତା'ର ବଡ ଲଜ୍ଜା ହେଲା । ସେ କୌଣସି କଥା କହିଲା ନାହିଁ । ବିମଳା କହିଲା, "କଣ ବହୂ ? ଚୁପ୍ କରି ରହିଲୁ ଯେ ?"

ଶୈଳୀ - ତାହା କି ହୁଏ ?

ବିମଳା- କାହିଁକି ? ସେଥିରେ ଦୋଷ କଅଣ ?

ଲେଖି ମୋ ପାଖରେ ଦେ, ମୁଁ ପଠାଇ ଦେବି, କେହି ଜାଣି ପାରିବେ ନାହିଁ ।

ଶୈଳ - ମୁଁ ତ କେବେ ତା'ଙ୍କ ସଙ୍ଗରେ କୌଣସି କଥା କହି ନାହିଁ । ସେହି ବିବାହ ସମୟରେ ଯାହା ଦେଖା ।

ବିମଳା - ତା--ନ କହିଲୁ, ସେଥିରେ କଣ ହେଲା ? ପତ୍ର ଲେଖିବାକୁ ଲଜ୍ଜା କଣ ?

ଶୈଳ - ତାଙ୍କୁ ପତ୍ର ଲେଖିଲେ କଅଣ ହେବ । ସେ କଣ ଏବେ ମୋର ଦୁଃଖ ଦୂର କରି ପାରିବେ ? ମୋର କଷ୍ଟର କଥା ତାହାଙ୍କୁ ଜଣାଇ କେବଳ କଷ୍ଟ ଦେବା ମାତ୍ର । ସେ ଏବେ ଲେଖାପଢ଼ା ଶିଖୁଛନ୍ତି, ଏବେ ଏହି ସବୁ ବିଷୟରେ ଚିନ୍ତା କରିବାକୁ ତାଙ୍କର ସମୟ ନାହିଁ । ଯାଉ ନାନୀ, ଈଶ୍ୱରଙ୍କ କୃପାରୁ ଦିନ ଆପେ ଆସିବ, ଏହି ସବୁ ଦୁଃଖ କଷ୍ଟ ଅବଶ୍ୟହିଁ ଛାଡି ଯିବ ।

ବିମଳା - ତୋର ପରି ଟୋକି ମୁଁ ଦେଖି ନାହିଁ ଭଉଣୀ ! ଆଃ, ଇମିତି ସୁନା ଲକ୍ଷ୍ମୀର କପାଳରେ ଦୁଃଖ ! ଯାହା ଭଲ ବୁଝିଛୁ ସେୟା କର । ମୁଁ ଏବେ ଯାଏଁ । ତୁ ମଧ୍ୟ ଚଟପଟ ଘରକୁ ଯା; ଡେରି ହେଲେ ଫେରେ ହୁଏତ ତୋତେ କେତେ ଗାଳି ଦେବେ ।

ଶୈଳ - ଟିକିଏ ରହ ନାନି ! ତୋତେ ଗୋଟାଏ କଥା କହିବି, ମନେ କରୁଥିଲି ।

ବିମଳା - ଆଚ୍ଛା କହ ?

ଶୈଳ - କାଲି ଯେତେବେଳେ ମୁଁ ଗାଧୋଉ ଥିଲି, ସେତେବେଳେ ସେ ପଡାର "ବାବୁର ମା" ମଧ ଗାଧୋଉଥିଲା । ମତେ ଦେଖି, କେତେ ଆଦର କରି ଆଳାପ କରିବାକୁ ଲାଗିଲା । ମୁଁ ତା'ସଙ୍ଗରେ କେବେ କଥା କହି ନାହିଁ, କଥା କହିବାକୁ ବଡ ଲଜ୍ଜା ହେଲା; କିନ୍ତୁ କଅଣ କରିବି: ଯେତେବେଳେ ଏତେ ଯତ୍ନ କରିବାକୁ ଲାଗିଲା, ସେତେବେଳେ କଥା ନ କହି ରହି ପାରିଲି ନାହିଁ ।

ବିମଳା - ହଁ, ମାଇକିନିଆ । ଯିମିତି ମିସୁରୀର ଛୁରୀ । ଶତପଥୀ ଘରର ବହୂଟାକୁ ଇମିତି କରି କଥାରେ ଭୂଲାଇ ଶେଷରେ ବିଚାରୀକୁ କି ଲାଞ୍ଛନା ବା ନ ଦେଇଛି ! ନିର୍ଦ୍ଦୋଷୀ ବାଳିକାର ଚିରକାଳ ପାଇଁ ଗୋଟିଏ କଳଙ୍କ ରଟିଗଲା । ଅଚ୍ଛା, ତୋତେ କ'ଣ କହିଲା ?

ଶୈଳ - କେତେ ରକମର ମିଠା କଥା ପରେ କହିଲା, "ବହୂ ! ତୁ ଏତେ କଷ୍ଟ ପାଉଛୁ କାହିଁକି ? ବାପଘରକୁ ଚାଲିଯାଅନା ? ମୁଁ କହିଲି, 'ଇଚ୍ଛା କଲାମାତ୍ରକେ ତ ଆଉ ବାପଘରକୁ ଯିବାର ହୁଏ ନାହିଁ ।" ସେ କହିଲା, "ତୁ ଗୋଟାଏ କାମ କର । ତୁ ଯଦି ପଳାଇ ଆମ୍ଭ ଘରକୁ ଯାଇ ପାରିବୁ, ତାହା ହେଲେ ମୁଁ ତତେ ତୋର ବାପଘରେ ଛାଡି ଦେଇ ଆସିବି ।"

ବିମଳା - ସେୟା-ବେଶ୍ କଥା । ସୁଯୋଗ ମନ୍ଦ ନୁହେଁ । ତୁ କ'ଣ କହିଲୁ ?

ଶୈଳ - ନାନି ! ସେତେବେଳେ ମାଆର ମୁହଁରୁ ପିଲାବେଳେ ଗୋଟାଏ ଶ୍ଳୋକ ଶୁଣିଥିଲି; ସେୟା ମନେ ହେଲା -

"କୁ-ଲୋକର ଆତ୍ମୀୟତା,
କଣ୍ଟାଗଛ ଛାୟା,
ଫୁଲେ ଡଙ୍ଗା ସାପ ବିଷ,
କୁ-ଲୋକର ମାୟା ।'

ଅଦୃଷ୍ଟରେ ଥିବ, ଏହା ଅପେକ୍ଷା ସହସ୍ର ଗୁଣ ଯନ୍ତଣା ଭୋଗ କରିବି । କୁ-ଲୋକର ପରାମର୍ଶରେ ନିଜର ସର୍ବନାଶ ନିଜେ କରିବି କାହିଁକି ? କହିଲି, "ମୁଁ ବାପଘରକୁ ଯିବାକୁ ଚାହେଁ ନାହିଁ, ମୁଁ ଏମିତି କ'ଣ ଅସୁଖରେ ଅଛି ?' ବୁଢ଼ୀ କିଛି ବିରକ୍ତ ହୋଇ

ଚାଲିଗଲା । ବିମଳା ଟିକିଏ ହସି ମନେ ମନେ ଶୈଳଜାକୁ ଶତ ଧନ୍ୟବାଦ ଦେଇ ଚାଲିଗଲା ।

ଶୈଳଜା ଭାବି ଭାବି ଘରକୁ ଆସିଲା । ଭାବିବାକୁ ଲାଗିଲା ବିମଳା ସ୍ୱାମୀଙ୍କ ପାଖକୁ ଲେଖିବାକୁ କହିଲା, ପତ୍ର ଲେଖିବି କି ? ନା - ଲେଖିବାକୁ ଲାଜ ଲାଗୁଛି । ତାଙ୍କ ସଙ୍ଗରେ କେବେହେ କଥାଟିଏ କହି ନାହିଁ, ଏବେ ପତ୍ର ଲେଖିଲେ ସେ ଯଦି ଲଜ୍ଜାହୀନା ବୋଲି ବିରକ୍ତ ହୁଅନ୍ତି । ଆଉ ଲେଖି ଅବା ହେବ କ'ଣ । ସେ ତ ବେଶ୍ ମନ ସୁଖରେ ଅଛନ୍ତି; ମୋର ଦୁଃଖର କଥା ଶୁଣିଲେ ତାଙ୍କର କଷ୍ଟ ହେବ । ସେ ତ ସୁଖରେ ଥାଉନ୍ତୁ; ମୁଁ ନ ହୁଏ ଦୁଇଦିନ କଷ୍ଟ ଭୋଗ କଲି; କିନ୍ତୁ ତାଙ୍କୁ ଯଦି ଟିକିଏ ଦେଖି ପାରନ୍ତି ତାହା ହେଲେ ଏହି କଷ୍ଟ ମଧ୍ୟରେ ବି ପରମ ସୁଖୀ ହୁଅନ୍ତି । ସେୟା କରିବି । ପତ୍ର ଲେଖା ହେବ ନାହିଁ । ପୂଜା ଆସୁଛି, ସେ ଅବଶ୍ୟ ଘରକୁ ଆସିବେ । ମୋ ଦୁର୍ଗେ ! ତାଙ୍କର ମଙ୍ଗଳ କରନ୍ତୁ । ଏହି ଅଭାଗିନୀର 'ସେ' ଭିନ୍ନ ଆଉ ଆଶ୍ରୟର ସ୍ଥଳ ନାହିଁ ।

ସ୍ୱାମୀଙ୍କ କଥା ଭାବୁ ଭାବୁ ଶୈଳବାଳାର ଅନ୍ତରରେ ଗୋଟିଏ ଅପୂର୍ବ ଆନନ୍ଦର ସଞ୍ଚାର ହେଲା । "ସ୍ୱାମୀଙ୍କୁ ପତ୍ର ଲେଖିବ ନାହିଁ" ସ୍ଥିର କଲା, ତଥାପି ମନର ଆବେଗରେ ଖଣ୍ଡିଏ କାଗଜ ଉପରେ ଲେଖିଲା -

"ପ୍ରାଣେଶ୍ୱର !

ଏତେ ଦୁଃଖ ମଧ୍ୟରେ ସୁଦ୍ଧା ଯେତେବେଳେ ତୁମ୍ଭର କଥା ମନେ କରେଁ, ସେତେବେଳେ ଯେପରି ସବୁ ଭୂଲି ଯାଏଁ, ମନରେ କେତେ ଆହ୍ଲାଦ ହୁଏ ! -"

ଶୈଳଜା ଏହି କେତୋଟି କଥା ଲେଖିଛି ଏପରି ସମୟରେ ଲକ୍ଷ୍ମୀ ଆସି ସେଠାରେ ଉପସ୍ଥିତ ହେଲା । ବହୂ କାମଦାମ ଛାଡି କାଗଜ କଲମ ଘେନି ଅନର୍ଥକ ସମୟ ନଷ୍ଟ କରୁଛି ଦେଖି, ନଣନ୍ଦ ଏକାବେଳକେ ତେଲରେ ବାଇଗଣ ପଡିଲା ପରି ଜରଜର କରି ଜଳି ଉଠିଲା । ଧଡପଡ ହୋଇ ଲକ୍ଷ୍ମୀ ଶୈଳଜାର ହାତରୁ କାଗଜ ଖଣ୍ଡିକ କାଡ଼ି ନେଲା । ନିଜର ଅକ୍ଷର ପରିଚୟ ନାହିଁ, କାଗଜରେ କଣ ଲେଖା ହୋଇଛି ପଢ଼ି ପାରିଲା ନାହିଁ, କିନ୍ତୁ କାଗଜ ଖଣ୍ଡକର ଭାବ ଦେଖି ବୁଝିଲା, ଏହା କାହାରି ପାଖକୁ ପତ୍ର ଲେଖା ହୋଇଛି । ବହୂ ଅବଶ୍ୟ ବାପଘରକୁ ଶାଶୂ ନଣନ୍ଦର ନିନ୍ଦା କରି ପତ୍ର ଲେଖୁଥିଲା - ଭାବି ଲକ୍ଷ୍ମୀ ରାଗରେ ଆଠ ଖଣ୍ଡ ହୋଇ କହିଲା, "ହୁଁ, ଠିକ୍ ବାପଘରକୁ ପତ୍ର ଲେଖାହେଉଛି । ସେ ଗୁଡରେ ବାଲି । ତୁ ନିତାନ୍ତ ନିଷ୍ଠୁର, ଅଳାଜୁକ, ସେଥିପାଇଁ

ଇମିତି ପୋତାବାପ ଭାଇଙ୍କର ନା' ପକାଉ । ଆଜ ବର୍ଷେ ହେଲା ଥରେ ବି ତତେ ଆଖିରେ ଦେଖିବାକୁ ଆସିଲେ ନାହିଁ । ଆମ୍ଭେ ହେଲେ ଇମିତି ବାପ ଭାଇଙ୍କର ମୁହଁରେ ଛାଞ୍ଚୁଣୀ ମାରି ଦିଅନ୍ତୁ ।"

ଲକ୍ଷ୍ମୀର କଥା ଶୁଣି ଲକ୍ଷ୍ମୀର ମାଆ ମଧ୍ୟ ଆସି ସେଠାରେ ଉପସ୍ଥିତ ହେଲେ । ମାଆକୁ ଦେଖି ଲକ୍ଷ୍ମୀ କାଗଜ ଖଣ୍ଡିକ ମାଆ ଆଗରେ ପକାଇ ଦେଇ କହିଲା - "ଏହି ଦେଖ ! ତୁମ୍ଭର ବହୂ ପୁଣି ବାପଘରକୁ ପତ୍ର ଲେଖୁଛନ୍ତି ।

ଗୃହିଣୀଙ୍କର ମଧ୍ୟ ଖୁବ୍ ରାଗ ହେଲା, କହିଲେ, "ହଁ, ଠିକ୍ ! ଅଭାଗିନୀର ଲଜ୍ଜା ନାହିଁ ! ଆଚ୍ଛା ଦେଖୁଁ, ଏଥର କଅଣ ଲେଖିଛି ! ପଡାର ଗୋଟିଏ ପିଲାକୁ ପତ୍ର ଖଣ୍ଡିକ ପଢ଼ାଇ ଶୁଣିଲେ । ପ୍ରଥମରେ କିଛି ବୁଝିଲେ ନାହିଁ । ବୁଦ୍ଧିମତୀ କନ୍ୟା, ଏଥର ଗୋଟାଏ ନୂଆ ସୁଯୋଗ ପାଇଲା, ସେ ତା'ର ମାତାକୁ ବେଶ୍ କରି ବୁଝାଇ ଦେଲା ଯେ ବହୂ କୌଣସି ପରପୁରୁଷ ପ୍ରତି ଆସକ୍ତା: ତାହାରି ପାଖକୁ ପ୍ରଣୟ-ପତ୍ର ଲେଖୁଥିଲା । କନ୍ୟାର କଥାରେ ମାତାଙ୍କର ମଧ୍ୟ ସମ୍ପୂର୍ଣ୍ଣ ବିଶ୍ୱାସ ହେଲା । ବହୂ ପ୍ରତି ଗୋଟାଏ ମୁହଁରେ ସାତ ମୁହଁ ଧଇଲା । ତା'ପରେ ମା'ଝିଅ ହୋଇ କର୍ତ୍ତାଙ୍କୁ କହିବାକୁ ଗଲିଲେ । ଶୈଳଜା ଭୟରେ ଓ ଦୁଃଖରେ ଦିଗ୍‌ବିଦ୍ଧିଗ ଜ୍ଞାନଶୂନ୍ୟ ହୋଇ ନୀରବରେ ଛିଡା ହୋଇ ରହିଲା ।

ଦମ୍ ଦମ୍ କରି ପାଦ ପକାଇ ଗୃହିଣୀ କର୍ତ୍ତାଙ୍କ ପାଖକୁ ଯାଇ କାଗଜ ଖଣ୍ଡିକ ଫିଙ୍ଗି ଦେଲେ ଏବଂ ଆଖିର ବିଲକ୍ଷଣ ଭଙ୍ଗି କରି କହିଲେ "ଏହି ଦେଖ, ତୁମ୍ଭର ବହୂର ଗୁଣ-କୀର୍ତ୍ତି । ସାକ୍ଷାତ ଶଙ୍ଖିନୀ, ଆଉ କଅଣ !"

କର୍ତ୍ତା କାଗଜ ଖଣ୍ଡିକ ଦେଖି ଦୁଇ ତିନି ଥର ପଢ଼ିଲେ; ଗୃହିଣୀର.କଥାର ଭାବ ବୁଝି ପାରିଲେ ନାହିଁ; କ'ଣ ? କଥା କଅଣ ?

ଗୃହିଣୀ ରାଗର ମାତ୍ରା ଆଉ ଟିକିଏ ବଢ଼ାଇ କହିଲେ, "ଯେମିତି କିଛି ବୁଝି ପାରିଲେ ନାହିଁ । ତା - ଏବେ ବୁଝିବ କାହିଁକି ? କହେ, ଯେଉଁ ମାଇକିନିଆ ଇମିତି ପତ୍ର ଲେଖେ, ତାହାକୁ ବୁଝିବାକୁ ଆଉ ବାକି କଅଣ ?"

କର୍ତ୍ତା - ବହୂ ମା' ବୋଧହୁଏ ନଟବର ପାଖକୁ ପତ୍ର ଲେଖୁଥିଲା ।

ଗୃହିଣୀ- "ହଁ, ତୁମ୍ଭର ଯେଉଁ ବୁଦ୍ଧି ! ନଟବର ସଙ୍ଗରେ ତ ତାର ଏ ପର୍ଯ୍ୟନ୍ତ ଆଳାପ ସୁଦ୍ଧା ହୋଇ ନାହିଁ । ଏଇ ମାଆ ଗୋ ! ମୋ ଘରକୁ ଡାହାଣୀ ଆସିଛି ଗୋ । ଡାହାଣୀର ମାୟାରେ ତୁମ୍ଭେ ବି ଭୂଲିଛ ! ଏବେ ମୋର ପିଲାଟିର କୌଣସି ଅମଙ୍ଗଳ ନ

ହୁଏ !"

କ୍ରମେ ଗୃହିଣୀଙ୍କଠାରେ କର୍ତ୍ତାଙ୍କୁ ହାର ମାନିବାକୁ ହେଲା । ଗୃହିଣୀ ସେତେବେଳେ ବେଶ୍ କରି ବୁଝାଇ ଦେଲେ ଯେ ତାଙ୍କର ପୁତ୍ର-ବଧୂ ପରପୁରୁଷଠାରେ ଅନୁରକ୍ତା, ବ୍ୟଭିଚାରିଣୀ, ଦୁଶ୍ଚରିତ୍ରା, ଶଙ୍ଖିନୀ, ଡାକିନୀ, ଅଭିସାରିକା ଇତ୍ୟାଦି । କର୍ତ୍ତା ମଧ ଭାରି ବିରକ୍ତ ହେଲେ, କହିଲେ, "ତେବେ ଆଉ ଏଠାରେ ରଖି କାମ ନାହିଁ: ବାପଘରକୁ ପଠାଇ ଦେଇ ପୁଅର ପୁଣି ବିବାହ ଦିଆଯାଉ ।"

ଲକ୍ଷ୍ମୀ ପାଖରେ ଥିଲା, ଭାବିଲା - ଏହି ତ କାମ ଖରାପ ହେଲା । ବହୂକୁ ଯଦି ବାପଘରକୁ ପଠାହୁଏ, ତେବେ ସଂସାରରେ ସମସ୍ତ କାମ ତ ତାକୁ ହିଁ କରିବାକୁ ହେବ । ଯେପରି ସେୟା ନ ହୁଏ, ସେଥିପାଇଁ କହିଲା, "ସେ କଅଣ ବାପା । ତାହା କ'ଣ ହୁଏ ? ସେଠାକୁ ପଠାଇଦେଲେ କ'ଣ ଆଉ ଜାତିମାନ ରହିବ ? ହଜାର ହେଉ, ଆମ୍ଭର ଜାତି ମାନ ତ ! ତଥାପି ଏଠାରେ ଅନେକ ଅଂଶରେ ଶାସନ ଅଛି ।

ମାତା ମଧ ସେ କଥାର ସମର୍ଥନ କଲେ । କର୍ତ୍ତା ପରାଜିତ ହେଲେ, କହିଲେ, "ତେବେ ଏହିଠାରେ ରଖ, କିନ୍ତୁ ମୁଁ ଆଉ ସେ ବହୂର ହାତରୁ ପାଣିଟିକ ମଧ ପିଇବି ନାହିଁ । ଦୁଷ୍ଟାରିଣୀ ସ୍ତ୍ରୀର ହାତରୁ ପାଣି ପିଇ ପରଲୋକରେ ପତିତ ହେବି ?"ସେତେବେଳେ ଗୃହିଣୀ ଓ କନ୍ୟାର ଟିକିଏ ଭାବନା ହେଲା, କାରଣ ଏତେ ଦିନ ସେମାନଙ୍କୁ ସଂସାରରେ କୌଣସି କର୍ମ କରିବାକୁ ପଡୁ ନ ଥିଲା । ଏବେ ଅଗତ୍ୟା ଇନ୍ଧନର ଭାରଟା ନେବାକୁ ପଡ଼ିଲା ।

ସେତେବେଳେ ମାଆ ଝିଅ ମିଳି ବଧୁକୁ ଖୋଦ୍ ଦମେ ଗାଳି ତିରସ୍କାର ଦେଇ ମନର ଦୁଃଖ ମେଣ୍ଟାଇ ନେଲେ । ପଡାର ଲୋକମାନେ କେହି କେହି କହନ୍ତି, ସେହି ଦିନ ଶାଶୁ ଠାକୁରାଣୀ ପୁତ୍ରବଧୂକୁ ନା, କଣ ପ୍ରହାର ମଧ କରିଥିଲେ !

ହତଭାଗିନୀ ଶୈଳଜା ଆଉ କ'ଣ କରିବ ? ଏତେ ଦିନେ ସେ ସଂସାରର ଘୃଣିତ ଦାସୀ ହେଲା । ଶାଶୁଶ୍ୱଶୁରଙ୍କ ଚକ୍ଷୁରେ କଳଙ୍କିନୀ, ପାପିଷ୍ଠା ବୋଲି ସ୍ଥିରୀକୃତ ହେଲା । ଥରେ ଭାବିଲା, ଉଦ୍‌ବନ୍ଧନରେ ବା ବିଷ ପାନରେ ପ୍ରାଣତ୍ୟାଗ କରିବ; କିନ୍ତୁ ସେଥିରେ ହୁଏତ ସ୍ୱାମୀର ଓ ପିତାମାତାଙ୍କର ମନରେ ଚିରଦିନ ପାଇଁ ଗୋଟାଏ ବ୍ୟଥା ରହିଯିବ, ଏହା ଭାବି, ସେ ସେହି ସଂକଳ୍ପ ତ୍ୟାଗ କଲା । କାନ୍ଦି କାନ୍ଦି ପରମେଶ୍ୱରଙ୍କ ପାଖରେ ମରଣ କାମନା କରିବାକୁ ଲାଗିଲା ।



# ପଞ୍ଚମ ପରିଚ୍ଛେଦ

"ଏକେ ବକ୍ଷେ ତୃଷନିଆଁ ତହିଁ ବଜ୍ରପାତ, ସର୍ବେ ଅଙ୍ଗେ ବିଷଛୁରୀ, ଆଉ ଶେଳାଘାତ ।"

ଏ ସବୁ ଦୁଃଖ ତ ସାମାନ୍ୟ; ହତଭାଗିନୀର ଅଦୃଷ୍ଟରେ ଏତଦପେକ୍ଷା ସହସ୍ର ଗୁଣ ଗୁରୁତର ଦୁଃଖ ଲେଖାଥିଲା । ଶୈଳଜାର ସ୍ୱାମୀ ତାକୁ ବିବାହ କରି ଆଣି ତହିଁର ପର ଦିନରୁ-କଟକକୁ ଯାଇଛନ୍ତି; ପଢ଼ାର କ୍ଷତି ହୁଏ ବୋଲି ଦୁଇ ଦିନ ବିଳମ୍ବ କରି ମଧ ଯାଇ ପାରିଲେ ନାହିଁ । ତା ପରେ ପ୍ରାୟ ବର୍ଷାବଧି ହେବାକୁ ଗଲିଲା, ସେ ଆଉ ଘରକୁ ଫେରି ନାହାନ୍ତି । ଶୈଳଜା ଭାବିଲା ପୂଜା ସମୟରେ ସ୍କୁଲ ବନ୍ଦ ହେବ, ସେତେବେଳେ ଅବଶ୍ୟ ହିଁ ଘରକୁ ଆସିବେ; କିନ୍ତୁ ତାର ଆଶା ମାତ୍ରକ ସାର ହେଲା । ଆଉ ଆଉ ସମସ୍ତେ ପୂଜା ଛୁଟିରେ ଘରକୁ ଆସିଲେ, ନଟବର ଆସିଲେ ନାହିଁ । ନ ଆସିଲେ ବରଂ ଭଲ, କିନ୍ତୁ ଆଉ ଗୋଟିଏ ସର୍ବନାଶର ସମ୍ବାଦ ମିଳିଲା ।

ସାମନ୍ତ ମହାଶୟ ପୁତ୍ର ଆସିଲେ ନାହିଁ ଦେଖି, ସମସ୍ତଙ୍କଠୁଁ ତାଙ୍କର ସମ୍ବାଦ ବୁଝିଲେ; ସମସ୍ତେ କହିଲେ - "ନଟବର ପଢ଼ାଶୁଣା ସବୁ ଛାଡି ବଦଲୋକଙ୍କ ସଙ୍ଗରେ ମିଶି କେବଳ ଆମୋଦ ପ୍ରମୋଦ କରି ବୁଲେ । ଖର୍ଚ୍ଚ ପାଇଁ ଘରୁ ଯେଉଁ ଟଙ୍କା ପାଏ, ତହିଁରେ ମଦଖାଏ, ଆଉ ବାବୁଗିରି କରେ ।"

ପୁତ୍ରର ଏହି ଅଧଃପତନର କଥା ଶୁଣି ସାମନ୍ତ ମହାଶୟ ଅନ୍ତରରେ ଯତ୍ପରୋନାସ୍ତି ବେଦନା ପାଇଲେ । ସେ ଅର୍ଥ ବ୍ୟୟ କରିବାକୁ ନିତାନ୍ତ କାତର ହେଲେ ମଧ ପୁତ୍ରକୁ ଲେଖାପଢ଼ା ଶିଖାଇବାକୁ ମାସ ମାସରେ ଅନ୍ତତଃ ପଚିଶ ଟଙ୍କା ବ୍ୟୟ କରୁଛନ୍ତି; ଆଉ ପୁତ୍ର ସେହି ଟଙ୍କା ଏହିପରି ଭାବରେ ଅପବ୍ୟୟ କରୁଛି । ତା'ଙ୍କର ମନଦୁଃଖର ସୀମା ରହିଲା ନାହିଁ । ସେ ତତ୍କ୍ଷଣାତ୍ ନଟବରକୁ ଆଣିବାକୁ କଟକ ଯାତ୍ରାକଲେ ।

ଏଣେ ଶୈଳଜାର ଅବସ୍ଥା ଯାହା ହେଲା, ତାହା ଅବଶ୍ୟ ବୁଝି ପାରୁଛନ୍ତି । ତା'ର ପିତା, ମାତା ଥିଲେ; ପାଞ୍ଚ ପାଞ୍ଚଟା ଭାଇଥିଲେ; ଶାଶୁ, ଶ୍ୱଶୁର, ଧନ, ଦୌଲତ ସମସ୍ତ ଥିଲା; କିନ୍ତୁ ଶୈଳଜାର ଏଥିରେ ସୁଖ ହେଲା ନାହିଁ । ସମସ୍ତ ଛାଡି ସେ କେବଳ ଏବେ ଏକମାତ୍ର ସ୍ୱାମୀ ଉପରେ ନିର୍ଭର କରି ରହିଛି । ଏତେ କଷ୍ଟ ଏତେ ଦୁଃଖ ତୁଚ୍ଛ କରି ଅଭାଗିନୀ କେବଳ ସ୍ୱାମୀଙ୍କ ମୁହଁ ଚାହିଁ ଏତେ ଦିନ ଜୀବନ ଧରି ରହିଥିଲା । ଆଜି ଅକସ୍ମାତ୍ ସ୍ୱାମୀଙ୍କର ଏହି ଅଭାବନୀୟ ଅଧଃପତନର କଥା ଶୁଣି ବାଳିକା ଚତୁର୍ଦ୍ଦିଗ ଶୂନ୍ୟ ଦେଖିବାକୁ ଲାଗିଲା । ତାର ଏତେ ଦୁଃଖ ମଧରେ ଯେ ଏକମାତ୍ର ସୁଖର ସାମଗ୍ରୀ ଥିଲା, ତା'ର ମଧ ଏହି ଦଶା ଘଟିଲା । ଜୀବନର ଏକମାତ୍ର ଆଶାରେ ସୁଦ୍ଧା ସେ ନିରାଶ

ହେଲା । ଶୈଳଜାର ସର୍ବାଙ୍ଗରେ ଅତି ତୀବ୍ର ବିଷର ସ୍ରୋତ ଧାଇଁବାକୁ ଲାଗିଲେ ।

ଗୃହିଣୀ ପୁତ୍ରର ଏହିପରି ଦୁଃସମ୍ବାଦ ଶୁଣି ସ୍ୱର ଧରି କାନ୍ଦିବାକୁ ଲାଗିଲେ । ଦୁର୍ଲକ୍ଷଣା ବଧୂ ଶୈଳଜାକୁ ଘରକୁ ଆଣି ତାଙ୍କର ପୁତ୍ର ଏହିପରି ଅଧୋଗତି ହୋଇଛି ବୋଲି ମନେକରି; ବଧୂକୁ ସେହି ଅବସ୍ଥାରେ ନାନା ପ୍ରକାର କୁବଚନରେ ମନ୍ତ୍ରଣା ଦେବାକୁ ଲାଗିଲେ । ଶୈଳଜାର ମଡା ଉପରେ ଖଣ୍ଡାର ଚୋଟ ! ଦୁଃଖରେ, ଅଭିମାନରେ ଅଭାଗିନୀ ଆହାର ନିଦ୍ରା ତ୍ୟାଗକଲା । ଆଜି ଦୁଇଦିନ ହେଲା ଶୈଳଜା ଶଯ୍ୟାଗତ ହୋଇ ରହିଛି, ଆହାର ନାହିଁ, ନିଦ୍ରା ନାହିଁ, କେବଳ ଚକ୍ଷୁ ଜଳରେ ଭାସୁଛି । ତା'ର ଉତ୍‌ଥାନ-ଶକ୍ତି ରହିତ; କୌଣସି କାମଧାମ କରି ପାରୁ ନାହିଁ । ଶାଶୁ ନଣନ୍ଦ ତାକୁ ଅନବରତ ଗାଳି ଦେଉଛନ୍ତି । ଦୁଇ ଦିନ ଅନାହାର, ତଥାପି ତାହାକୁ ଡାକି କେହି ଟୋପାଏ ପାଣି ପର୍ଯ୍ୟନ୍ତ ଦେଉ ନାହାନ୍ତି । ତାର ଆପଣାର ଲୋକ ମଧ୍ୟରେ ଏକମାତ୍ର ବିମଳା; କିନ୍ତୁ ବିମଳାକୁ ସେଦିନ ଶୈଳଜାର ଶାଶୁ ନଣନ୍ଦ ବିସ୍ତର ତିରସ୍କାର କରି, ତାହାକୁ ତାହାଙ୍କ ଘରକୁ ଆସିବାରେ ବାରଣ କରି ଦେଇଅଛନ୍ତି । ସେ ନା କ'ଣ ବହୂକୁ କୁପରାମର୍ଶ ଦିଏ । ସୁତରାଂ କାହାରି ପାଖରେ ମନର ଦୁଃଖ ପ୍ରକାଶ କରି ଯେ ମନୋବେଦନା ଟିକିଏ ଶାନ୍ତ କରିବ, ଅଭାଗିନୀ ଶୈଳଜା ସେପରି ଲୋକ ମଧ୍ୟ ପାଇଲା ନାହିଁ ।

ବିମଳା ସବୁ ଶୁଣି ପାରିଥିଲା । କେବଳ ଶୈଳଜାର ଶାଶୁ ନଣନ୍ଦର ଭୟରେ ତା'ସଙ୍ଗରେ ଦେଖାକରି ପାରେନାହିଁ, କିନ୍ତୁ ଆଉ ରହି ପାରିଲା ନାହିଁ । ନିରାଶ୍ରୟା ଶୈଳଜା ପାଇଁ ତା'ର ପ୍ରାଣ କାନ୍ଦି ଉଠିଲା । ସେ ପ୍ରାଣର ଟାଣରେ ସ୍ନେହକରେ, ତାକୁ କ'ଣ ଲଜ୍ଜା, ଅପମାନ ବାନ୍ଧି ରଖିପାରେ ? ଲକ୍ଷ୍ମୀ ଓ ତା'ର ମାତା ତାକୁ ଏତେ ଗାଳି ଦେଇଥିଲେ, ଏତେ ଅପମାନ ଦେଇଥିଲେ, ବିମଳା ସମସ୍ତ ଭୁଲି ଶୈଳଜାକୁ ଦେଖିବାକୁ ଆସିଲା । ଦେଖିଲା, ଶୈଳଜା ଭୂଇଁରେ ଗଡି ଚକ୍ଷୁ ଜଳରେ ଭାସୁଛି; ତାର ସର୍ବ ଶରୀର ଜୀର୍ଣ୍ଣ ଶୀର୍ଣ୍ଣ ହୋଇ ଯାଇଛି; ସେପରି ସୁନାର ବର୍ଣ୍ଣ କଳାପଡି ଯାଇଛି ଦେଖି ବିମଳାର ଆଖିରେ ପାଣି ଆସିଲା । ବିମଳା ଧୀରେ ଧୀରେ ଶୈଳଜାର ମୁଣ୍ଡରେ ହାତଦେଇ ଅତି ସ୍ନେହ ମଖା ସ୍ୱରରେ କହିଲା - "ବହୂ ! ଇମିତି କିରି ନ ଖାଇ, ନ ଗାଧୋଇ କାନ୍ଦିଲେ କ'ଣ ଅଦୃଷ୍ଟର ଦୁଃଖ ଘୁଞ୍ଚେ ? ଉଠ ନାନୀ, ଭଗବାନଙ୍କୁ ଡାକ; ଅଦୃଷ୍ଟର ଦୁଃଖ ସେ ଭିନ୍ନ ଆଉ କିଏ ଖଣ୍ଡାଇ ପାରିବ ? ମାହାଲିଆ ଭାବି ଶରୀର ନଷ୍ଟକଲେ ହେବ କ'ଣ ?"

ବିମଳା ଦେଖି ଓ ତା'ର କରୁଣାପୂର୍ଣ୍ଣ କଥାଗୁଡିକ ଶୁଣି ଶୈଳଜାର ଦୁଃଖର ସାଗର ଏକା ଥରକେ ଉଚ୍ଛୁଳି ଉଠିଲା । ଅତି ଦୁଃଖ ସମୟରେ ଆପଣାର ଲୋକ

ଦେଖିଲେ ଦୁଃଖ ଯେପରି ଭାସି ଉଠେ । ଶୈଳଜା ଚିତ୍କାର କରି କାନ୍ଦି ପକାଇଲେ । ବିମଳାର ମଧ ଚକ୍ଷୁର ଧାରରେ ବକ୍ଷ ଭାସିଯିବାକୁ ଲାଗିଲା । ସେ ଅଞ୍ଚଳରେ ଶୈଳଜାର ଚକ୍ଷୁ ପୋଛି ଦେଇ କହିଲା "ଛି ବହୂ ! ସ୍ଥିର ହୁଅ, ଏତେ କହିଲା ହୋଇ ଯୋଗାଏ ? ମନକୁ ପ୍ରବୋଧ ଦିଅ ।"

ଶୈଳବାଳା କାନ୍ଦି କାନ୍ଦି କହିଲା, "ନାନୀ ଆଉ ମୁଁ କିମିତି କରି ସହିବି ? ମଣିଷର ପ୍ରାଣ ତେତେ ସହିବ ? ମୁଁ ପୂର୍ବ ଜନ୍ମରେ କ'ଣ ମହାପାପ କରିଥିଲି । ଏବେ ସୁଦ୍ଧା ଯଦି ମୋର ମରଣା ହୁଅନ୍ତା, ତଥାପି ନିସ୍ତାର ପାଆନ୍ତି: ନୋହିଲେ ମୋର ଭାଗ୍ୟରେ ଆହୁରି କେଜାଣି କେତେ ଦୁଃଖ ଲେଖା ଅଛି ।"

ବିମଳା - ଛି ! ଶାନ୍ତ ହୁଏ, ଏତେ ଅଧୀର ହେଉଛ କାହିଁକି ? ନାନା ଲୋକେ ଆସି କି କି ଖବର ରଟାଇଛନ୍ତି, ସେଥିରେ ଏତେ ଆକୁଳ ହେବା ଉଚିତ ? ଲୋକେ ହୁଏକୁ ନୁହେଁ କରି କେତେ କଥା ରଟାନ୍ତି ! ଈଶ୍ୱର କୃପାରୁ ଦେଖିବ; ସେ ସବୁ ମିଛ । ତୋର ପରି ନିର୍ଦ୍ଦୋଷ ବାଳିକାକୁ ବିଧାତା କେବେହେଁ ଚିରଦିନ ଇମିତି ଦୁଃଖଭାଗିନୀ କରିବେ ନାହିଁ ।

ଶୈଳ - ନାନି ! ମୁଁ ମଧ ଏତେ ଦିନ ସେୟା ଭାବୁଥିଲି । ମନେ କରୁଥିଲି, ମୋର ଏହି ଦୁଃଖ କଷ୍ଟ କୌଣସି ମତେ ଚିରଦିନ ରହିବ ନାହିଁ; ଆଜି ବାଦ୍ କାଲି ଅବଶ୍ୟ ସୁଖ ହେବ; କିନ୍ତୁ ଏବେ ମୋର ସବୁ ସଧରେ ପାଉଁଶ ପଡିଲା । ମୁଁ ନିତାନ୍ତ କୁ-ଲକ୍ଷଣୀ; ମୋହରି ପାଇଁ ତାଙ୍କର ଇମିତି କୁମତି ଘଟିଛି; ନୋହିଲେ ପୂର୍ବରେ ତ ତାଙ୍କର ଇମିତି ଭାବ ନ ଥିଲା । ମୁଁ ନ ମଲେ ତାଙ୍କର ମଙ୍ଗଳ ହେବ ନାହିଁ । ମୋର ମରଣ ହିଁ ମଙ୍ଗଳ ।

ବିମଳା - ଯାଉ; ସେସବୁ କଥା ଏବେ ରଖ, ଆସ ଦୁଇଟା ଭାତ ଖାଇ ଟିକିଏ ସୁସ୍ଥ ହୁଅ ।

ଶୈଳ- ନା ନାନି ! ଆଉ ଅନ୍ନଜଳ ଗ୍ରହଣ କରିବି ନାହିଁ । ମରଣ ଭିନ୍ନ ମୋର ଅନ୍ୟ ପଥ ନାହିଁ ।

ବିମଳା ତାର କୌଣସି କଥା ଶୁଣିଲା ନାହିଁ । ଜୋର କରି ଶୈଳଜାକୁ ନେଇ ପାକଶାଳାକୁ ଗଲା । ନିଜେ ଭାତ ବାଢ଼ି ଆଣିଲା; ଅଗତ୍ୟା ଶୈଳଜା ଖାଇବାକୁ ବସିଲା; କିନ୍ତୁ ଭାତ ଗଳାଧଃକୃତ ହେବାକୁ ଚାହେଁ ନାହିଁ । ଏତେ କଷ୍ଟରେ କଅଣ ଖୁଆଏ ? ଯାହାହେଉ, ବିମଳାର ଅନୁରୋଧରେ ଯେତିକି ପାରିଲା, ଖାଇଲା ।



# ଷଷ୍ଠ ପରିଚ୍ଛେଦ

ଘରେ ପାଇ ପୂର୍ଣ୍ଣଲକ୍ଷ୍ମୀ (ଆଲୋ) ଚିହ୍ନି ନ ପାରୁଁ । ଦେଉଛୁଁ ଲୋ କେତେ ଦୁଃଖ,
ସେହି ଦୁଃଖେ ମରୁଁ ।।

ସାମନ୍ତ ମହାଶୟ ଲୋକଙ୍କ ମୁଖରୁ ପୁତ୍ରର ସମ୍ବାଦ ଯାହା ଶୁଣିଥିଲେ, କଟକକୁ ଯାଇ ସେହିପରି ଦେଖିବାକୁ ପାଇଲେ । ଦେଖିଲେ ନଟବର କେତେଗୁଡ଼ିଏ ବଦ୍‌ଲୋକଙ୍କ ସଙ୍ଗରେ ମଦ ଖାଇ ଆମୋଦ କରୁଛି । ତାର ଏବେ ଆଉ ସେ ଶ୍ରୀ ନାହିଁ । ସର୍ବ ଶରୀର ଶୀର୍ଣ୍ଣ ଓ ବିବର୍ଣ୍ଣ ହୋଇ ଯାଇଛି । ଚକ୍ଷୁ ଦୁଇଟି ପଶି ଯାଇଛି, ସର୍ବାଙ୍ଗରେ ଶିରା ଜାଗି ଉଠିଛି । ଏହି ସବୁ ଦେଖି ସାମନ୍ତ ମହାଶୟ କାଳ ବିଳମ୍ବ ନ କରି ନଟବରକୁ ନେଇ ଘରକୁ ଆସିଲେ ।

ନଟବର ଘରକୁ ଆସିଲେ ସତ୍ୟ; କିନ୍ତୁ ସ୍ତ୍ରୀ ସଙ୍ଗରେ ସାକ୍ଷାତ ହେଲା ନାହିଁ । ହିନ୍ଦୁ ଘରର ସ୍ୱାମୀ ସ୍ତ୍ରୀ ପ୍ରଥମ ପ୍ରଥମରୁ ନିଜେ ନିଜେ ଯାଇ ସାକ୍ଷାତ କରିବାକୁ ଲଜ୍ଜାବୋଧ କରନ୍ତି । ଘରେ ମାଆ ଥାଆନ୍ତି, ଭଉଣୀ ଥାଆନ୍ତି, ସେହିମାନେ ଯତ୍ନ କରି ସ୍ୱାମୀ ସ୍ତ୍ରୀ ମଧ୍ୟରେ ଦେଖା ସାକ୍ଷାତ କରିବାକୁ ବନ୍ଦୋବସ୍ତ କରି ଦିଅନ୍ତି; କିନ୍ତୁ ଏହି କ୍ଷେତ୍ରରେ ତା'ର ବିପରୀତ ଘଟିଲା । ନଟବର ଘରକୁ ଆସିବା ମାତ୍ରକେ ଲକ୍ଷ୍ମୀ ଆସି ବେଶ୍ ସଜାଇ ସଜାଇ ଭ୍ରାତାଠାରେ ବହୂର ଦୋଷ ବର୍ଣ୍ଣନା କଲା । ବହୂ କୌଣସି କାମଦାମ ଜାଣେ ନାହିଁ; ସମସ୍ତଙ୍କ ସଙ୍ଗରେ କଳିକଜିଆ କରେ; ସର୍ବଦା ଛୋଟ ଲୋକ ପରି ଅପରିଷ୍କାର ଥାଏ । ବହୂର ଚରିତ୍ର ଅତି ମନ୍ଦ; ଲକ୍ଷ୍ମୀ ସ୍ୱଚକ୍ଷୁରେ ଦେଖିଛି, ବହୂ ତାର ଉପପତି ନିକଟକୁ ପତ୍ର ଲେଖୁଥିଲା । କୁ-ସଂସର୍ଗରେ ଥାଇ ମନ୍ଦ କର୍ମ କରି କରି ନଟବରକୁ ବୁଦ୍ଧି ଏକପ୍ରକାର ଲୋପ ହୋଇଛି, ଭଗିନୀର କଥାରେ ତାର ପୂର୍ଣ୍ଣ ବିଶ୍ୱାସ ହେଲା । ସ୍ତ୍ରୀ ଉପରେ ଅତ୍ୟନ୍ତ ରାଗ ହେଲା, ପ୍ରତିଜ୍ଞା କଲା – 'ଏପରି ସ୍ତ୍ରୀ ସଙ୍ଗରେ ବାକ୍ୟାଳାପ ମଧ କରିବ ନାହିଁ ।'

ଯାହାହେଉ ଶୈଳଜାର ମନର ଦୁଃଖ ଅନେକ ପରିମାଣରେ ଦୂର ହେଲା, ସେ ଏତେ କିଛି ଜାଣି ପାରିଲା ନାହିଁ । ସ୍ୱାମୀ ନିରାପଦରେ ଘରକୁ ଫେରି ଆସିଛନ୍ତି – ତହିଁରେ ସେ ସୁଖୀ ହୋଇଛି । ଏବେ ଈଶ୍ୱର କରନ୍ତୁ – ତାଙ୍କର ଦୋଷଗୁଡିକ ସୁଧୁରିଯାଉ – ଶୈଳଜାର ଏହାହିଁ ପ୍ରାର୍ଥନା ।

ଏହାରି ମଧରେ ଆହୁରି ଗୋଟିଏ ବିପଦ ଆସି ପଡିଲା । ସାମନ୍ତ ମହାଶୟ

ଘୋର ପୀଡାଗ୍ରସ୍ତ ହୋଇ ପଡିଲେ । ସେ ଭାବିଥିଲେ, ନଟବରକୁ ଘରକୁ ଆଣି ଯଥାବିଧି ଶାସନ କରି ତାହାକୁ ଭଲ କରିବେ । କିନ୍ତୁ ତାଙ୍କର ସେ ଆଶା ସଫଳ ହେଲା ନାହିଁ । ନଟବର ଶାସନର ବାହାର ହୋଇ ପଡିଛି । ଘରକୁ ଆସି ଗ୍ରାମର ଦୁଷ୍ଟ ଲୋକମାନଙ୍କୁ ନେଇ ଫେର କୁ-କାର୍ଯ୍ୟରେ ରତ ହୋଇଛି । ଅନେକ ସମୟରେ ଗୃହରୁ ବାକ୍ସ, ପେଡି ଭାଙ୍ଗି ଟଙ୍କା ନେଇ ଅପବ୍ୟୟ କରୁଛି । ସାମନ୍ତ ମହାଶୟ ଅନେକ ଚେଷ୍ଟା କରି ମଧ ତାର ଏହି ଅଭ୍ୟାସ ଦୋଷ ଦୂର କରିପାରି ନାହାନ୍ତି । ତାଙ୍କର ସେ ଏକମାତ୍ର ପୁତ୍ର - ଏତେଗୁଡିଏ ଟଙ୍କା ବ୍ୟୟ କରି ସେ ତାର ଉଚ୍ଚ ଶିକ୍ଷାର ଚେଷ୍ଟା କଲେ, ଫଳରେ ଏହା ହେଲା, ଏହି ଚିନ୍ତାରେ ସେ ସର୍ବଦା ହିଁ ଚିନ୍ତିତ । ବିଶେଷତଃ ଅର୍ଥ ତାଙ୍କର ଅତି ପ୍ରିୟ, ସେ ଅନେକ କଷ୍ଟରେ ଏତେଗୁଡିଏ ଅର୍ଥ ସଞ୍ଚୟ କରିଛନ୍ତି । ତାଂକର ପରେ ନଟବର ଏହି ସମସ୍ତ ଅର୍ଥ ଏହିପରି ନଷ୍ଟ କରି ସର୍ବସ୍ୱାନ୍ତ ହେବ - ଏହି ଦୁଃଖ ତାଙ୍କରି ହୃଦୟରେ ଅସହନୀୟ ହୋଇ ଉଠିଲା । ମନୋବେଦନାରେ ସେ ପୀଡିତ ହୋଇ ପଡିଲେ । ପୀଡା - କାଶ ଓ ଉଦରାମୟ । ଏକେ ବୃଦ୍ଧ ବୟସ, ତହିଁ ଉପରେ ଏପରି ଗୁରୁତର ପୀଡା । ସାମନ୍ତ ମହାଶୟଙ୍କର ବଞ୍ଚିବାର ଆଶା ରହିଲା ନାହିଁ; କିନ୍ତୁ ଏହି ଆସନ୍ନ ମୃତ୍ୟୁ ସମୟରେ ତାଂକର ପୂର୍ଣ୍ଣଲକ୍ଷ୍ମୀ ବଧୂର ଗୁଣ ସେ ବୁଝି ପାରିଲେ ।

ସାମନ୍ତ ଶଯ୍ୟାଗତ; ଉଠିବାର ଶକ୍ତି ନାହିଁ, ଶଯ୍ୟା ପାର୍ଶ୍ୱରେ ପୁତ୍ର, କନ୍ୟା, ପତ୍ନୀ କେହି ନାହାନ୍ତି; କେବଳ ପୁତ୍ରବଧୂ ଶ୍ୱଶୁରଂକ ପାଦ ପାଖରେ ବସି ତାଂକର ଶୁଶ୍ରୂଷା କରୁଛି । ଶଯ୍ୟାରେ ମଳମୂତ୍ର ତ୍ୟାଗ କରୁଛନ୍ତି । ପୁତ୍ରବଧୂ ତତ୍‌କ୍ଷଣାତ୍ ତାହା ପରିଷ୍କାର ଦେଉଛି । ମୁହୁର୍ମୁହୁଃ କାଶି ଛେପ ପକାଉଛନ୍ତି, ବଧୂ ହାତ ଦେଇ ଧରୁଛି । କର୍ତ୍ତାର ମୁହଁରେ ଅରୁଚି, କିଛି ଖାଇ ପାରନ୍ତି ନାହିଁ - ବଧୂ ପ୍ରତ୍ୟହ ପନ୍ଦର ଷୋହଳ ରକମର ସୁଖାଦ୍ୟ ପ୍ରସ୍ତୁତ କରି ଶ୍ୱଶୁରଙ୍କୁ ଖୁଆଉଛି । ସାମନ୍ତ ମହାଶୟ ବଧୂକୁ ଦୁଶ୍ଚରିତ୍ର ଜାଣି ତାର ହାତରେ ଖାଇବି ନାହିଁ ବୋଲି ପ୍ରତିଜ୍ଞା କରିଥିଲେ; କିନ୍ତୁ ପୀଡା ହେଲାରୁ ସେ ପ୍ରତିଜ୍ଞା ରକ୍ଷା କରି ପାରିଲେ ନାହିଁ ; କାରଣ ତାହାହେଲେ ତାଙ୍କର ଉପଯୁକ୍ତ ପଥ୍ୟାଦି କିଛି ବନ୍ଦୋବସ୍ତ ହୋଇ ପାରିବ ନାହିଁ । ଯଦି କିଛି ହୁଏ, ତାହା ଯଥା ସମୟରେ କିମ୍ବା ଅଭିରୁଚି ମତେ ହେବ ନାହିଁ । ଏକମାତ୍ର ବଧୂର ଉପରେ ହିଁ କର୍ତ୍ତାର ସେବା ଶୁଶ୍ରୂଷାର ଭାର ଅର୍ପିତ ହୋଇଛି । ଗୃହିଣୀ ବା ଲକ୍ଷ୍ମୀ ତାଙ୍କ ପାଖକୁ ବେଶି ଯିବାଆସିବା କରନ୍ତି ନାହିଁ । ସାମନ୍ତ ସର୍ବଦା ଘରେ ମଳମୂତ୍ର ତ୍ୟାଗ କରନ୍ତି ବୋଲି ସେମାନଙ୍କର ବଡ଼ ଘୃଣା ହେଉଥିଲା ।

ଦିନେ ବେଳ ତୃତୀୟ ପ୍ରହର ଅତୀତ ହୋଇଛି - ସାମନ୍ତ ଶୋଇଛନ୍ତି, ଶୈଳଜା

ଶର୍ଯ୍ୟାପାଖରେ ବସି ପବନ କରୁଛି: କର୍ତ୍ତାଙ୍କର ପୀଡା ଆଜି ଟିକିଏ କମ୍ ହୋଇଛି । ସମସ୍ତ ରାତ୍ର ଯନ୍ତଣାରେ ନିଦ ହୋଇ ନାହିଁ, ଏବେ ଟିକିଏ ସୁସ୍ଥ ହୋଇ ଶୋଇ ପଡିଛନ୍ତି । ଶ୍ୱଶୁର ଯହିଁରେ ସ୍ୱଚ୍ଛନ୍ଦରେ ଟିକିଏ ଶୋଇପାରିବେ, ସେଥିପାଇଁ ବଧୂ ଅବିରାମ ବ୍ୟଜନ ଚାଳନ କରୁଛି । ସମସ୍ତେ ଆହାରାଦ ସାରି ବିଶ୍ରାମ କରୁଛନ୍ତି । ଶୈଳଜାର ଏତେବେଳଯାଏ ଖିଆ ହୋଇ ନାହିଁ । ତେତେକ୍ଷଣ ପରେ କର୍ତ୍ତାଙ୍କର ନିଦ ଭାଙ୍ଗିଲା, ସେ ଚକ୍ଷୁ ମେଲାଇ ଦେଖିଲେ ବଧୂ ସେହି ସମୟରୁ ତାଙ୍କୁ ପବନ କରୁଛି । ସେ ଯେପରି ବିସ୍ମିତ ହୋଇ ପଚାରିଲେ – "ବହୂ ମା ! ତୁ କଣ ତେତେବେଳରୁ ଏ ପର୍ଯ୍ୟନ୍ତ ଏଠାରେ ବସି ରହିଛୁ ? ଆହାରାଦି କରି ନାହୁଁ ? ବେଳ ଯେ ଏତେ ହେଲାଣି !"

ଶୈଳଜା କହିଲା, "ତା ହେଉ, ମୋର ଖାଇବା ଟିକିଏ ଡେରି ହୋଇଛି, ସେଥିରେ କ'ଣ ଅଛି ? ଆପଣ କାଲି ସମସ୍ତ ରାତି ଶୋଇ ନାହାନ୍ତି, ଏବେ ଟିକିଏ ଶୁଅନ୍ତୁ ।"

କର୍ତ୍ତା – ମୁଁ ସମସ୍ତ ରାତ୍ରି ଯନ୍ତଣାରେ ଛଟପଟ ହେଉଛି, ସମସ୍ତ ରାତ୍ରି ତୋତେ କେବଳ ମୋର ଶଯ୍ୟା ପାର୍ଶ୍ୱରେ ବସିଥିବାର ଦେଖିଛି । ତୁ ରାତ୍ରିଯାକ ଥରେ ସୁଦ୍ଧା ଶଯ୍ୟାରେ ଗଡପଡ ହୋଇ ପାରି ନାହୁଁ । ଫେରେ ଏ ପର୍ଯ୍ୟନ୍ତ ତୁ ମୋ ପାଖରେ ବସି ରହିଛୁ । ମୋର ପୀଡା ଆରମ୍ଭ ଦିନରୁ ତୋ ଭିନ୍ନ ଅନ୍ୟ କାହାରିକୁ ମୋ ପାଖରେ ଦେଖି ପାରି ନାହିଁ । ତେବେ କ'ଣ ମୋର ଏ ସଂସାରରେ ଆଉ କେହି ନାହାନ୍ତି ?

ବଧୂ – ଥିବେ ନାହିଁ କାହିଁକି ? ମାଆ ବୁଢ଼ୀଲୋକ, ସେ ଏତେ କାମ କରି ପାରିବେ ନାହିଁ । ନାନୀ ରୋଗୀ ଲୋକ, ରାତି ଉଜାଗର ତାଙ୍କ ଦେହରେ ଯିବ ନାହିଁ । କାହିଁକି ସେମାନଙ୍କ ଅଭାବରେ ଆପଣଙ୍କର କଣ କୌଣସି ଅସୁବିଧା ହେଉଛି ? ଆପଣଙ୍କର ଯାହା ଦରକାର ମୋତେ କହିବେ, ମୁଁ କରିବାରେ ତ୍ରୁଟି କରିବି ନାହିଁ ।

କର୍ତ୍ତା କୌଣସି କଥା କହିଲେ ନାହିଁ, ତାଙ୍କର ଦୁଇ ଚକ୍ଷୁ ଦେଇ ଅବିରଳ ଜଳଧାରା ଗଡ ଶଯ୍ୟା ଭିଜି ଯିବାକୁ ଲାଗିଲା । ଶୈଳଜା ଦେଖି କହିଲା, "ଇଏ କଣ ବାପା ! ଆପଣ କାନ୍ଦୁଛନ୍ତି !"

ବୃଦ୍ଧ କାନ୍ଦିପକାଇଲେ, କାନ୍ଦି କାନ୍ଦି କହିଲେ – "ମା, ମୁଁ ନିତାନ୍ତ ହତଭାଗା, ପାପିଷ୍ଠ, ନରାଧମ ! – ମୁଁ ତୋ ପରି ସାକ୍ଷାତ ଦେବୀକୁ ଚିହ୍ନି ପାରି ନ ଥିଲି । ଏତେକାଳ ତୋତେ କେତେ କଷ୍ଟ ଦେଇଛି, ପାପିଷ୍ଠଗଣଂକର କଥା ଶୁଣି ମୁଁ ତତେ ତେତେ ନିଗ୍ରହ ଦେଇଛି ! ମା, ତୁ ସାକ୍ଷାତ ଲକ୍ଷ୍ମୀ, ଘରେ ଲକ୍ଷ୍ମୀ ପାଇ, ସୁନାବହୂ ପାଇ ମଧ ଚିହ୍ନି ନ ପାରି ପାଦରେ ଠେଲି ଦେଇଛି ।

ବୃଦ୍ଧ ଏକେ କଠିନ ପୀଡାରେ କାତର, ତହିଁରେ ପୁଣି ଏପରି ସୁନାବହୂକୁ ଏପରି ଭାବର ନିର୍ଯ୍ୟାତନା ଦେଇଛନ୍ତି, ଏହି ଅନୁତାପ ତାଂକର ଅନ୍ତଃକରଣରେ ବିଷମ ଅଗ୍ନି ଜାଳି ଦେଇଛି । ଆଜି ତାଙ୍କର ପତ୍ନୀ କନ୍ୟା କେହି ପାଖରେ ନାହାନ୍ତି, କେବଳ ସେହି ବାଳିକା ପୁତ୍ରବଧୂ - ଯାହାକୁ ସେ ହୀନ ବଂଶଜାତ: ଦୁଶ୍ଚରିତ୍ରା ବୋଲି ଏତେଦିନ ଘୃଣା କରି ଆସିଛନ୍ତି । ସେହି ଆଜି ତାଙ୍କର ମରଣ ଶଯ୍ୟାରେ ଏକମାତ୍ର ଶୁଶ୍ରୁଷାକାରିଣୀ, ତାଂକ ମରଣ ଯନ୍ତ୍ରଣାରେ ଏକମାତ୍ର ଶାନ୍ତିବିଧାୟିନୀ । ଅସହ୍ୟ ମନୋବେଦନାରେ ତାଂକର କଣ୍ଠରୁଦ୍ଧ ହୋଇ ଆସଲା, ନୟନରୁ ଅବିରଳ ଧାରାରେ ଅଶ୍ରୁ ବର୍ଷଣ ହେବାକୁ ଲାଗିଲା ।

ଶ୍ୱଶୁରଂକର ଏ ପ୍ରକାର ଅବସ୍ଥା ଦେଖି ଶୈଳଜା ମଧ ଅନ୍ତରରେ ବେଦନା ପାଇଲା । କ'ଣ କରିବ କିଛି ବୁଝି ନ ପାରି ନୀରବ ହୋଇ ରହିଲା । କର୍ତ୍ତା ଟିକିଏ ଦମ ନେଇ ଫେର କହିବାକୁ ଲାଗିଲେ, "ମା ! ତୁ ମୋର ଘରକୁ ଆସି ଦିନକର ପାଇଁ ସୁଦ୍ଧା ସୁଖୀ ହୋଇ ପାରି ନାହୁଁ ? ଯଦି ମୁଁ ଏବେ କିଛି ଦିନ ବଞ୍ଚନ୍ତି, ତେବେ ମୁଁ ତୋତେ ସୁଖୀ କରି ପାରନ୍ତି: କିନ୍ତୁ ଏଥର ମୋର ଆଉ ନିସ୍ତାର ନାହିଁ । ମୁଁ ଏତାବତ୍ କାଳ ଏପରି ଏକ ନିରପରାଧୀ ଦେବୀଙ୍କୁ କଷ୍ଟ ଦେଇଛି । ପରଲୋକରେ ଅବଶ୍ୟ ମତେ ଏହାର ଫଳ ଭୋଗିବାକୁ ହେବ । ତୁ ଯଦି କ୍ଷମା କରୁ, ତେବେ ମୋର ନିସ୍ତାର ହୋଇପାରେ - ମା, ଆଉ ସମୟ ନାହିଁ, କଣ କରିବି । ଆଶୀର୍ବାଦ କରୁଛି, ଭବିଷ୍ୟତରେ ଭଗବାନ ତୋତେ ସୁଖୀ କରିବେ । ଶୈଳଜା ଜୀବନରେ କେବେ ଶ୍ୱଶୁର ଶାଶୁଙ୍କ ମୁହଁରୁ ଆଦରର କଥା ଶୁଣି ନ ଥିଲା । ଆସନ୍ନ ମୃତ୍ୟୁ ଶ୍ୱଶୁରଙ୍କର ମୁହଁରୁ ଆଜି ଏହି ଅଭାବନୀୟ କଥା ଶୁଣି ତା'ର କାନ୍ଦ ଆସିଲା । ଅଞ୍ଚଳରେ ମୁହଁ ଲୁଚାଇ କହିଲା, 'ବାପା ! ଇମିତି କଥା କହୁଛନ୍ତି କାହିଁକି ? ଆପଣ ମତେ କେବେହେଁ କଷ୍ଟ ଦେଇ ନାହାନ୍ତି । ପରମେଶ୍ୱର ଆପଣଙ୍କୁ ବଞ୍ଚାଇବେ, ମୁଁ ସୁଖୀ ହେବି ।"

କର୍ତ୍ତା ଆଉ କୌଣସି କଥା କହିଲେ ନାହିଁ । ଏକ ଦୃଷ୍ଟିରେ ବଧୂର ମୁହଁ ଆଡକୁ ଚାହିଁ ରହିଲେ; ଦେଖିଲେ ତାର ବିବର୍ଣ୍ଣ ଗଣ୍ଡଦ୍ୱୟ ଧୋଇ ଜଳଧାର ଗଡି ପଡୁଛି ! ଆହୁରି ଦେଖିଲେ: ବଧୂର ପିନ୍ଧା (ଦେହାବରଣ) ଲୁଗା ଖଣ୍ଡିକ ଅତି ଜୀର୍ଣ୍ଣ, ସାତ ଆଠ ଜାଗାରେ ଛିଣ୍ଡି ଯାଇଛି: ହାତରେ ଉରିପଟ କାଚର ଚୂଡି ଭିନ୍ନ କୌଣସି ଅଳଙ୍କାର ନାହିଁ । ଦେଖି କହିଲେ, "ବହୂ ମାଆ, ତୁ କ'ଣ ଖଣ୍ଡିଏ ଭଲ ଲୁଗା କି ଭଲ ଅଳଙ୍କାର ସୁଦ୍ଧା ପାଇ ପାରୁ ନାହୁଁ ?" ବଧୂ କୌଣସି କଥା କହିଲା ନାହିଁ । ଶ୍ୱଶୁର ଅନେକ ଦିନରୁ ପୁତ୍ରବଧୂକୁ ଏହିପରି ନିରାଭରଣା ଦେଖି ଆସୁଥିଲେ । କେବେ ତ ଏପରି କଥା କହି ନାହାନ୍ତି ? ସେତେବେଳେ ଯେ ବଧୂ ଦୁଶ୍ଚରିତ୍ରା: ଚକ୍ଷୁର ବିଷଥିଲା ! ଏବେ ସେ ତାହାକୁ

ଚିହ୍ନିଛନ୍ତି । ସାମାନ୍ୟ କାଚ ଭାବି ସେ ଯାହା ଅନାଦରରେ ଦୂରକୁ ନିକ୍ଷେପ କରିଥିଲେ, ଏବେ ଦେଖୁଛନ୍ତି ତାହା ପ୍ରକୃତ ଅମୂଲ୍ୟରତ୍ନ । ସାମନ୍ତ ଅଣ୍ଟାରୁ ଚାବି ବାହାର କରି ଶୈଳଜାର ହାତରେ ଦେଇ କହିଲେ, "ମା ! ମୋର ବାକ୍ସଟି ଖୋଲତ । ଭିତରେ ଯେଉଁ କେତେ ଖଣ୍ଡ 'ନୋଟ' ଅଛି, ତାହା ନେଇଆସ ।" ଶୈଳଜା ଦ୍ୱିରୁକ୍ତି ନ କରି ଚାବି ହାତରେ ନେଇ ବାକ୍ସ ଖୋଲିଲା । ଶ୍ୱଶୁରଙ୍କ ଆଦେଶାନୁଯାୟୀ ନୋଟଗୁଡ଼ିକ ଆଣି ତାହାଙ୍କ ହାତରେ ଦେଲା । କର୍ତ୍ତା ସେହି ନୋଟଗୁଡ଼ିକ ବଧୂର ହାତରେ ଦେଇ କହିଲେ, "ମା ! ଏହି ନୋଟଗୁଡ଼ିକ ଖୁବ୍ ସାବଧାନରେ ରଖିବୁ । ଏହା ସର୍ବସମେତ ଚାରିହଜାର ଟଂକାର ନୋଟ । ବଞ୍ଚିଥାଇ ତତେ ମୁଁ ଖଣ୍ଡିଏ ଭଲ ଲୁଗା ସୁଦ୍ଧା ଦେଇ ନାହିଁ ? ଏହାହିଁ ତତେ ଦେଇ ଯାଉଛି । ନଟବରର ଯେଉଁ ପରି ଅବସ୍ଥା, ସେଥିରେ ମୋର ବିଷୟ ସମ୍ପତ୍ତି ରହିବ ନାହିଁ । ତତେ ଯାହା ଦେଇ ଯାଉଛି, ତାହା କାହାରିଠାରେ ପ୍ରକାଶ କରିବୁ ନାହିଁ । ଯଦି ଆଉ ଦୁଇଦିନ ବଞ୍ଚେ, ତାହାହେଲେ ସମସ୍ତ ବିଷୟ-ସମ୍ପତ୍ତି ତୋ'ରି ନାମରେ ଉଇଲ କରି ଦେଇଯିବି ।"

ଯା'ର ଗୁଣ ଥାଏ, ଦିନେ ନା ଦିନେ ତା'ର ବାଧ ହେବାକୁହିଁ ହେବ । ସାମନ୍ତ ମହାଶୟ ଏତେ ଦିନ ଯାଏ ଶୈଳଜାର ଗୁଣ ବୁଝିପାରି ନ ଥିଲେ, ଆଜି ବୁଝିଛନ୍ତି । ଯେ ଟଂକାକୁ ବକ୍ଷର ରକ୍ତ ଅପେକ୍ଷା ସମଧିକ ପ୍ରିୟ ମଣୁଥିଲେ, ଯା'ର ଗୋଟାଏ ପଇସା ଭଙ୍ଗାଇବାକୁ ଅନ୍ତରରେ ଅତ୍ୟନ୍ତ ଦୁଃଖ ହେଉଥିଲା, ଆଜି ସେ ଚାରିହଜାର ଟଙ୍କା ଅକାତରରେ ସ୍ୱେଚ୍ଛାରେ ବଧୂର ହସ୍ତରେ ସମର୍ପଣ କରିଛନ୍ତି ! ଶୈଳଜା ଶ୍ୱଶୁରଙ୍କର ଆଦେଶରେ ନୋଟଗୁଡ଼ିକ ଲୁଚାଇ ରଖିଲା । ଆଉ କେହି ତାହା ଜାଣି ପାରିଲେ ନାହିଁ । କର୍ତ୍ତା ସେତେବେଳେ ଗୃହିଣୀକୁ ଡାକି କହିଲେ, "ତୁମ୍ଭେମାନେ ଏତେ ଦିନ କାଳ ବହୂ ମାଆକୁ ଅନର୍ଥ ଯନ୍ତ୍ରଣା ଦେଇଛ । ମୁଁ ମରଣ - କାଳରେ ତୁମ୍ଭମାନଙ୍କୁ କହି ଯାଉଛି, ଏପରି ସୁନାକୁ ଆଉ ଯନ୍ତ୍ରଣା ଦିଅନାହିଁ ।"

ଏହିପରି କହି ସେ ଗୃହିଣୀକୁ ବହୂର ଅଳଙ୍କାର ଗୁଡ଼ିକ ବାହାର କରିଦେବାକୁ କହିଲେ । ଗୃହିଣୀ ଓ ଲକ୍ଷ୍ମୀ ଏହି ସମସ୍ତ ଶୁଣି ମନେ ମନେ ରାଗରେ ଜଳିବାକୁ ଲାଗିଲେ; କିନ୍ତୁ କଣ କରିବେ ? ଅଳଙ୍କାର ଗୁଡ଼ିକ ବାହାର କରି ଦେବାକୁ ହେଲା । କର୍ତ୍ତା ସେତେବେଳେ ବଧୂକୁ ଅଳଙ୍କାର ପିନ୍ଧିବାକୁ କହିଲେ, ଶୈଳଜା ଲଜ୍ଜାରେ ପିନ୍ଧିବାକୁ ଚାହିଁଲା ନାହିଁ । କର୍ତ୍ତା ବିଶେଷ ଅନୁରୋଧ କରି କହିଲେ, ମା ! ଥରେ ମାତ୍ର ଏ ଅଳଙ୍କାର ପିନ୍ଧ; ମୋର ବଡ ଇଚ୍ଛା ହେଉଛି, ତତେ ଥରେ ସଜାଇ ସେପରି ବେଶରେ ଦେଖିବି । ଯେତେବେଳେ ମୋର ସମୟ ଥିଲା, ତେତେବେଳେ ତତେ ଦିନେ ମଧ

ଭଲ ଚକ୍ଷୁରେ ଦେଖିନାହିଁ । ସାମନ୍ତ ମହାଶୟ କାନ୍ଦିବାକୁ ଲାଗିଲେ । ଶ୍ୱଶୁରଂକ ଅନୁରୋଧରେ ଶୈଳଜା ସମସ୍ତ ଅଳଂକାର ପିନ୍ଧିଲା ।

କିନ୍ତୁ ଶୈଳଜାର ଅଦୃଷ୍ଟ ଭଲ ନୁହେଁ । ଏତେଦିନ ପରେ ସେ ଶ୍ୱଶୁରଙ୍କ ପାଖରୁ ପିତାଙ୍କର ଅପେକ୍ଷା ମଧ ଅଧିକ ସ୍ନେହ ପାଇଲା, କିନ୍ତୁ ଏହି ସ୍ନେହ ତା'ର ଭାଗ୍ୟରେ ଅଧିକ ଦିନ ରହିଲା ନାହିଁ । ତହିଁଆର ଦିନ ସାମନ୍ତ ମହାଶୟ ସାଧ୍ୱୀ ପୁତ୍ରବଧୂର ମୁଖ ନିରୀକ୍ଷଣ କରି କରି ପରଲୋକ ଯାତ୍ରାକଲେ ।

ଶୈଳଜାର ହୃଦୟରେ ପିତୃଶୋକ ଅପେକ୍ଷା ଅଧିକତର ଶୋକ ବାଧିଲା ।



# ସପ୍ତମ ପରିଚ୍ଛେଦ

"ସୁ-ନାରୀ ପଡଇ ଯେବେ
କୁ-ପୁରୁଷ ହାତେ,
ଜୀବନ ତାହାର ଯାଏ,
କାନ୍ଦି କାନ୍ଦି କେତେ ?"

ପିତାଂକର ମୃତ୍ୟୁ ହେଲା, ନଟବର ସ୍ୱାଧୀନ ହେଲେ । ସେ ଏବେ କୋଡିଏ ହଜାର ଟଂକାର ସମ୍ପତ୍ତିର ଅଧିକାରୀ ହେଲେ । ଏତେକାଳ ପିତାଂକର ଶାସନରେ ଓ ଅର୍ଥର ଅଭାବରେ ସେ ମନର ବାସନା ସବୁ ସମୟରେ ସଫଳ କରିପାରି ନାହାନ୍ତି; ଏବେ ତାହାଙ୍କୁ ପାଏ କିଏ ? ଅଜସ୍ର ଅର୍ଥବ୍ୟୟ କରିବାକୁ ଲାଗିଲେ, ଅବିରାମ ଆମୋଦ-ପ୍ରମୋଦ ଚାଲିବାକୁ ଲାଗିଲା:-କେତେ କେତେ ବାଈ ନାଟ୍ୟ-ପ୍ରାସାଦ-ପ୍ରାଙ୍ଗଣରେ ନୃତ୍ୟ କରି ନବ ସାମନ୍ତ ମହାଶୟକଂର ଜୟଗାନ କରୁଅଛନ୍ତି; କେଉଁଠାରେ ଅବା ବାବୁଗିରି ଏକମାତ୍ର ସହାୟକ ହୁଇସ୍କି (ମଦ୍ୟ) ବୋତଲ ସଜ୍ଜିତ ହୋଇ ରଖା ହୋଇଅଛି; ଅନୁଚରବର୍ଗ ଅର୍ଥପ୍ରାପ୍ତି ଲାଳସାରେ ତାଂକର ବୃଥା ଗୁଣ-କୀର୍ତ୍ତନ କରୁଅଛନ୍ତି; ଏ ସବୁ ଆମୋଦ ପ୍ରମୋଦରେ ନଟବର ଅର୍ଥ ବ୍ୟୟ ନ କରି ରହି ପାରିଲେ ନାହିଁ । ଗୋଟାଏ ପଇସା ସୁଦ୍ଧା ଆୟ ନାହିଁ; କିନ୍ତୁ ପ୍ରତ୍ୟହ ପଞ୍ଚାଶ, ଷାଠିଏ, ଶଏ ପର୍ଯ୍ୟନ୍ତ ବ୍ୟୟ ହେବାକୁ ଲାଗିଲା । ବସି ଖାଇଲେ ରାଜଭଣ୍ଡାର ମଧ୍ୟ ଶେଷ ପାଏ । ନଟବରଂକର ଆଉ କେତେ ଦିନ ଚଳିବ ? କ୍ରମେ ସେ ଋଣ କରିବାକୁ ଆରମ୍ଭକଲେ ।

ଆହାର ସମୟ ଭିନ୍ନ ନଟବର ଘରକୁ ପ୍ରାୟ ଆସନ୍ତି ନାହିଁ; ତାହା ମଧ୍ୟ ସବୁ ଦିନ ନୁହେ । ସ୍ତ୍ରୀ ସଙ୍ଗରେ କେବେହେଁ ଦେଖା ସାକ୍ଷାତ କରନ୍ତି ନାହିଁ; ତେବେ ସମୟ ସମୟରେ ମାତା, ଭଗିନୀଙ୍କର କଥା ଶୁଣି ସ୍ତ୍ରୀକୁ ଗାଳି, ତିରସ୍କାର ଏପରି କି ପ୍ରହାର ପର୍ଯ୍ୟନ୍ତ ମଧ କରନ୍ତି । ଅଭାଗିନୀ ଶୈଳଜା ଆଉ କ'ଣ କରିବ ? ଅନ୍ତରର ଜ୍ୱାଳାରେ ଅନ୍ତରରେ ଜଳି ମରୁଛି । ସମୟ ପାଇଲେ ବିମଳା ପାଖରେ ଅନ୍ତରର କଥା ପ୍ରକାଶ କରି ଟିକିଏ କାନ୍ଦି ମନୋଦୁଃଖର ଲାଘବ କରେ । ଶୈଳଜା ବିମଳାକୁ ସର୍ବଦା ହିଁ କହୁଥାଏ, ସ୍ୱାମୀ ଯେ ମୋ ପ୍ରତି ବିମୁଖ; ଏଥିରେ ମୋର ଦୁଃଖ ନାହିଁ; କିନ୍ତୁ ତାଂକର ଦିନକୁ ଦିନ ଯେପରି ଅବସ୍ଥା ହେଉଛି, ସେଥିରେ ତାଂକର ପରିଣାମରେ ଯେ କଅଣ ଘଟିବ, ତାହାଭାବି ମୁଁ ଆକୁଳ ହେଉଛି । ବିମଳା ମଧ୍ୟ କେବଳ ଏହା କହି ପ୍ରବୋଧ ଦିଏ, "ଏକ ମନରେ ଈଶ୍ୱରଙ୍କୁ ଡାକ, ସେ ଅବଶ୍ୟ ମୁହଁ ଟେକି ଚାହିଁବେ ।"

ଦିନେ ରାତ୍ରିରେ ଶୈଳଜା ସଂସାରରେ ସମସ୍ତ କାମଦାମ ସାରି ଆପଣା ଘରେ ବସି ଚିନ୍ତା କରୁଛି; ରାତି ଅଧିକ ହୋଇଛି, ସମସ୍ତେ ଶୋଇ ପଡିଛନ୍ତି । ପ୍ରାଣରେ ଯା"ର ଅହର୍ନିଶ ଚିନ୍ତାରେ ନିଆଁ ଜଳୁଛି, ତାର ପୁଣି ନିଦ୍ରା କଅଣ ? ଶୈଳଜା ଦିନବେଳେ ଚିନ୍ତା କରିବାର ସେପରି ଅବସର ପାଏ ନାହିଁ । ତେଣୁ ଏହି ଗଭୀର ରାତ୍ରିରେ ବିକଳରେ ବସି ଆପଣା ଅଦୃଷ୍ଟ ଚିନ୍ତାରେ ମଗ୍ନ ରହିଛି । ଅନେକ ଚିନ୍ତାପରେ ଶୈଳଜା ଯୁକ୍ତ ହସ୍ତରେ ଉର୍ଦ୍ଧ୍ୱ ମୁଖରେ କହିଲା, "ହେ ଜଗଦୀଶ୍ୱର ! ହେ ଅନାଥର ନାଥ, ଥରେ ଏହି ଅଭାଗିନୀ ପ୍ରତି ମୁହଁ ଟେକି ଚାହଁ । ମୋର ସ୍ୱାମୀଙ୍କୁ ସୁମତି ଦିଅ । ଏହାଠାରୁ ସହସ୍ର ଗୁଣ ମୋତେ କଷ୍ଟ ଭୋଗିବାକୁ ହେଲେ, ସେଥିରେ ମୁଁ ଦୁଃଖିତ ନୁହେଁ, ସେ ଭଲ ହୁଅନ୍ତୁ, ସତ୍‌ପଥକୁ ଆସନ୍ତୁ; ମୁଁ ଆଉ କିଛି ସୁଖ ଚାହେଁ ନାହିଁ । ସେ ମତେ ସ୍ନେହ କରନ୍ତୁ ବା ନ କରନ୍ତୁ, ଏହାଠାରୁ ସହସ୍ର ଗୁଣରେ ମତେ ନିର୍ଯ୍ୟାତନା କରନ୍ତୁ; ତଥାପି ସେ ଭଲ ଭାବରେ ଥିଲେ, ମୁଁ ଅନ୍ୟ କାହିଁରେ ହିଁ ଦୁଃଖିତ ନୁହେଁ । ଏବେ ମୋର ଶତ ସପତ୍ନୀ ହେଲେ, ସେଥିରେ ମଧ୍ୟ ମୁଁ ଦୁଃଖିତ ନୁହେଁ । ଯଦି ତାଙ୍କର ସୁମତି ଫେରିଆସେ । ହେ ଅଗତିର ଗତି ପରମେଶ୍ୱର ! ଦାସୀର ପ୍ରାର୍ଥନାକୁ କର୍ଣ୍ଣରେ ସ୍ଥାନ ଦିଅ ।" ଚକ୍ଷୁ ଜଳରେ ଶୈଳଜାର ବକ୍ଷ ଭାସି ଯାଉଛି । ଏହିପରି ସମୟରେ ନଟବର ଦ୍ରୁତ ପଦକ୍ଷେପରେ ସେହି ଘରେ ପ୍ରବେଶ କଲେ । ଅପ୍ରତ୍ୟାଶିତ ଭାବରେ ସ୍ୱାମୀଙ୍କୁ ଦେଖି ଶୈଳଜା ବ୍ୟସ୍ତ ହୋଇ ଚକ୍ଷୁ ଜଳ ପୋଛିଲା । ନଟବର ଶୈଳଜାର ଶଯ୍ୟା ଉପରେ ବସିଲେ । ଶୈଳଜା ମନେ ମନେ ବିସ୍ମିତ ଓ ଆନନ୍ଦିତ ହେଲା । ସେ କେବେ ଏପରି ଭାବରେ ନଟବରଙ୍କୁ ତା' ଘରକୁ ଆସିବାର ଦେଖି ନ ଥିଲା । ଆଜି ସତ୍ୟ ସତ୍ୟ କଣ ଜଗଦୀଶ୍ୱର ବାଳିକାର ପ୍ରାର୍ଥନା ଶୁଣିଛନ୍ତି ? ଶୈଳଜା ଟିକିଏ ସରକି ଯାଇ ନୀରବରେ ଶଯ୍ୟାର ଏକ ପାର୍ଶ୍ୱରେ ବସି ରହିଲା । ଇଚ୍ଛା କରୁଥିଲା, ସ୍ୱାମୀଙ୍କର ଚରଣ ତଳରେ ଯାଇ ଲୋଟି ପଡିବ । କିନ୍ତୁ ସେ କେବେ ସ୍ୱାମୀଙ୍କ ସଙ୍ଗରେ ଆଳାପ କରି ନ ଥିଲା - ବଡ ଲଜ୍ଜା ହେଲା ।

ନଟବର ନିଜେ ଯତ୍ନ କରି ଆଳାପ କଲେ - "କି ହେ, କ'ଣ ହେଉଛି ?" ଶୈଳଜା କୌଣସି କଥା କହିଲା ନାହିଁ । ସ୍ୱାମୀଙ୍କର ମୁଖରୁ ଗାଳି ତିରସ୍କାର ଭିନ୍ନ ଏପରି ସରଳ କଥାରେ ସ୍ନେହର ଡାକ ସେ କେଉଁ ଶୁଣି ନ ଥିଲା । ଆଜି ସ୍ୱାମୀଙ୍କର ପ୍ରଣୟ ସମ୍ବୋଧନରେ ତାର ବଡ଼ ଆନନ୍ଦ ହେଲା । ପ୍ରବଳ ପବନ ମେଘରାଶି ଉଡ଼ାଇ ନେଲେ ଆକାଶ ଯେପରି ସହସା ହସି ଉଠେ, ତାର ଅନ୍ତଃକରଣର ଦୁଃଖରାଶି ମଧ୍ୟ ଆଜି ସେହିପରି ବିଦୂରିତ ହୋଇ ତାର ମନ ପ୍ରାଣ ପୁଲକିତ ହୋଇଛି । ପୁଲକରେ ସେ ମନେ ମନେ ଜଗଦୀଶ୍ୱରଙ୍କ ନାମ ସ୍ମରଣ କଲା ।

ନଟବର କହିଲେ - "କଣ ? ଅଭିମାନ କରୁଛ ନା କଣ ? କଥା କହିବ ନାହିଁ ? ଅତି ଧୀରେ ଧୀରେ ଶୈଳଜା ଉତ୍ତର ଦେଲା, ଯା'ସଙ୍ଗରେ ସାତ ମୁହଁରେ କଥା କହିଲେ କଥା ଶେଷ ହୁଏ ନାହିଁ, ତାଙ୍କ ଉପରେ ଅଭିମାନ କରି କଣ କଥା ନ କହି ରହି ହୁଏ ।"

ନଟବର - ଆଚ୍ଛା, ବେଶ୍ । ମୁଁ ଏବେ ଗୋଟାଏ ବିଶେଷ ବିପଦରେ ପଡ଼ିଛି, ତୁମକୁ ତହିଁରୁ ଉଦ୍ଧାର କରିବାକୁ ହେବ ।

ଶୈଳ - ମୁଁ ଦାସୀ; ଯାହା କହିବେ ସେୟା କରିବି ।

ନଟବର - ଏହି ରାତିରେ ମୋର ଶହେ ଟଙ୍କା ଦରକାର, ଆଜିକାଲି କିଛି ଟଣାଟଣି ପଡ଼ିଛି, ତୁମେ ଯଦି ଖଣ୍ଡିଏ ଅଳଙ୍କାର ଏବେ ଦେବ, ତେବେ ତାହା ବନ୍ଧା ରଖି ବିପଦରୁ ଉଦ୍ଧାର ହେବି । ଦୁଇ ଦିନ ପରେ ଜିନିଷ ଆଣି ତୁମକୁ ଦେବି ।

ନଟବରଙ୍କ ଟଙ୍କାର ଦରକାର, ଏଣୁ ପତ୍ନୀ ପ୍ରତି ଏତେ ଆଦର, ଶୈଳଜା ସବୁ ବୁଝିଲା । ତାର ଅନ୍ତରରେ ଯେଉଁ ଆନନ୍ଦଟିକ ସଞ୍ଚାର ହୋଇଥିଲା, କ୍ଷଣସ୍ଥାୟୀ ବିଦ୍ୟୁତାଲୋକ ପରି ତାହା ମୂହୂର୍ତ୍ତ ମଧ୍ୟରେ ବିଲୀନ ହୋଇଗଲା । ଅତି ଦୁଃଖରେ ସେ କହିଲା, "ମୋର ଯାହା କିଛି ଅଛି ସବୁ ତୁମର, ଦରକାର ହୁଏ ସମସ୍ତ ନିଅ । କିନ୍ତୁ ଦାସୀର ଗୋଟାଏ ଅନୁରୋଧ ଶୁଣ ।"

ନଟବର - ଆଚ୍ଛା, ସଂକ୍ଷେପରେ କହ ।

ଶୈଳ - ଦେଖ, ଆଉ ଇମିତି କରି କେତେ ଦିନ ଚଳିବ ? ବିଶେଷ ସମ୍ପତ୍ତି ଯାହାଥିଲା, ତାହା ତ ଯିବ ଯିବ ହୋଇଛି। ମୋର ଯେଉଁ କେତେଖଣ୍ଡ ଅଳଙ୍କାର ଅଛି, ସେଥିରେ ହୁଏତ ମାସେ ଚଳିପାରିବ; କିନ୍ତୁ ତା'ପରେ କଅଣ ହେବ ? ଅନ୍ନର ସଂସ୍ଥାନ ମଧ୍ୟ ରହିଲା ନାହିଁ । ତୁମ୍ଭର ପାଦ ଧରୁଛି, ଏହି ସବୁ ଛାଡ଼ିଦିଅ, ଦାସୀ ଅନୁରୋଧ ରଖ ।" ଏହା କହି କାନ୍ଦି କାନ୍ଦି ସ୍ୱାମୀଙ୍କର ପାଦ ତଳେ ଲୋଟି ପଡ଼ିଲା ।

ନିରନ୍ତର ଦୁଷ୍କର୍ମରେ ରତ ଥାଇ ନଟବରଙ୍କ ଭଲମନ୍ଦ ବୋଧ ରହିତ ହୋଇଯାଇଛି । ବିଶେଷ କରି ସେ ସେତେବେଳେ ମାତାଲ ଅବସ୍ଥାରେ ଥିଲେ । ବୁଦ୍ଧିମତୀ ପତ୍ନୀଙ୍କ କଥା ଗୁଡ଼ିକ ପ୍ରତି ସେ କର୍ଣ୍ଣପାତ ମଧ୍ୟ କଲେ ନାହିଁ । ସେ ଜୋର କରି ଶୈଳଜାର ହସ୍ତରୁ ପାଦ ସରାଇ ନେଇ ଅତି ରୁକ୍ଷ ସ୍ୱରରେ କହିଲେ, "ସେସବୁ କନ୍ଦା ରଡ଼ା ଏବେ ରଖ; କହେଁ ଦେବୁ କି ନାହିଁ ତାହା କହ ?

ଅତି ଦୁଃଖରେ ଶୈଳୀର ବକ୍ଷ ଫାଟିଯିବାକୁ ଲାଗିଲା, କୌଣସି କଥା ଉଚ୍ଚାରଣ

କରି ପାରିଲା ନାହିଁ । ଫିଟାଇ କାନ୍ଦିବାକୁ ମଧ୍ୟ ସାହସ ହେଲା ନାହିଁ । ନୀରବରେ ଅଞ୍ଚଳରେ ମୁହଁ ଢ଼ାଙ୍କି ବସି ରହିଲା । ସେତେବେଳେ ନଟବର ଅଧିକ ରୁଷ୍ଟ ହୋଇ, "ପାପିନି ! ମୋର କଥା ଗ୍ରାହ୍ୟ କଲୁ ନାହିଁ !" ବୋଲି ସଜୋରେ ଶୈଳଜାକୁ ପଦାଘାତ କଲେ । ଶୈଳଜା ଚିତ୍କାର କରି କାନ୍ଦି କହିଲା, "ମତେ ମାରି ପକାଅ, ମୋର ସମସ୍ତ ଜ୍ୱାଳା ଶାନ୍ତ ହେଉ ।" ଉନ୍ମତ୍ତ ଜ୍ଞାନହୀନ ସ୍ୱାମୀ ପୁଣି ସେହି ଧରାଲୁଣ୍ଠିତା, କୋମଳାପ୍ରାଣ ବାଳିକା ପତ୍ନୀକୁ କଠିନ ପଦାଘାତ କଲେ । ଶୈଳଜା ମୂର୍ଚ୍ଛିତା ହୋଇ ପଡିଲା । ନଟବର ତାର ବାକ୍ସ ଭାଙ୍ଗି ସମସ୍ତ ଅଳଙ୍କାର ବାହାର କରି ନେଇ ପ୍ରସ୍ଥାନ କଲେ । ଭାଗ୍ୟକ୍ରମରେ ଶୈଳଜାର ଶ୍ୱଶୁର ମରଣ କାଳରେ ତାହାକୁ ଯେଉଁ ନୋଟ୍‌ଗୁଡିକ ଦେଇଥିଲେ, ତାହା ସେ ବିମଳା ପାଖରେ ରଖିଥିଲେ: ନଟବର ତାହା ପାଇ ପାରିଲେ ନାହିଁ ।

ସେହି ରାତ୍ରିରେ ଶୈଳଜାର ଆଉ ଚୈତନ୍ୟ ଲାଭ ହେଲା ନାହିଁ । ଏକେ ବାଳିକା ବୟସ: ତହିଁରେ ପୁଣି ଏତେଦୂର ମନଃକଷ୍ଟ ! ଏତେଦୂର ଯନ୍ତ୍ରଣା ! ଅବିରାମ ପରିଶ୍ରମ ! ସମୟରେ ଆହାର କରେ ନାହିଁ, ତାହାର ଶରୀର ଅତିଶୟ ଶୀର୍ଣ୍ଣ ହୋଇ ଯାଇଥିଲା; ସେଥିରେ ଏହି ଦାରୁଣ ପ୍ରହାର ଓ ଲାଞ୍ଛନା ! ସମସ୍ତ ରାତ୍ର ଶୈଳଜା ଅଜ୍ଞାନବସ୍ଥାରେ ଭୂଇଁରେ ପଡି ରହିଲା । କେହି ଥରେ ସୁଦ୍ଧା ତାର ତତ୍ତ୍ୱ ନେଲେ ନାହିଁ । - ନେବ କିଏ ? ଇହ ଜଗତରେ ତାର କିଏ ଅଛି ? ପ୍ରଭାତରେ ବହୂ ଉଠିଲା ନାହିଁ ଜାଣି, ଲକ୍ଷ୍ମୀ ତା'ର ଘରକୁ ଯାଇ ଦେଖିଲା, ବହୂ ଭୂଇଁତଳେ ପଡି ରହିଛି । ଲକ୍ଷ୍ମୀ ଭାବିଲା, ବହୂ ବାହାନା କରି ଭୂମିରେ ପଡି ରହିଛି; କିନ୍ତୁ ପରୀକ୍ଷା କରି ଦେଖିଲା, ବାସ୍ତବିକ୍ ଅଜ୍ଞାନ । ଲକ୍ଷ୍ମୀର ବଡ ଭୟ ହେଲା; ସେ ଉଚ୍ଚସ୍ୱରରେ "ମା, ମା' ବୋଲି ଡାକିବାକୁ ଲାଗିଲା; ମା ମଧ୍ୟ ଧାଇଁ ଆସିଲେ । ଦୁଇଜଣ ମିଳି ଗୋଟାଏ ରୋଳ ଉଠାଇଲେ । ନଟବର ଘରେ ନ ଥିଲେ । ଏସବୁ କିଛି ଜାଣି ପାରିଲେ ନାହିଁ ।

ଗୋଳମାଳ ଶୁଣି ବିମଳା ଦୌଡି ଆସିଲା ଏବଂ ଶୈଳଜାର ଅବସ୍ଥା ଦେଖି ବଡ ଭୀତ ହେଲା । ଧୀରେ ଧୀରେ ତାହାକୁ ଶଯ୍ୟା ଉପରକୁ ଉଠାଇ ତାର ମୂର୍ଚ୍ଛା ଭାଙ୍ଗିବାକୁ ଚେଷ୍ଟାକଲା । ମୁଣ୍ଡରେ ପାଣି ଦେଲା, ଦେହରେ ବିଚଣା କରିବାକୁ ଲାଗିଲା । ଏହିପରି କରି କରି କିଛିକ୍ଷଣ ପରେ ଶୈଳଜାର ଜ୍ଞାନ ଆସିଲା । କିନ୍ତୁ ସେ ଜ୍ଞାନ ଅଧିକ କ୍ଷଣ ରହିଲା ନାହିଁ, ପୁଣି ମୂର୍ଚ୍ଛା ଆକ୍ରମଣ କଲା । ଥର ଥର ହୋଇ ଅନେକ ଥର ମୂର୍ଚ୍ଛା ଆସିଲା । ବିମଳା ସମସ୍ତ ଦିନ ପାର୍ଶ୍ୱରେ ଥାଇ ଶୈଳଜାର ଶୁଶ୍ରୂଷା କଲା ।



# ଅଷ୍ଟମ ପରିଚ୍ଛେଦ

"ପତିର ଜୀବନେ ବନ୍ଧା ସତୀର ଜୀବନ,

ପତିର ଜୀବନେ ଜିଏଁ, ମରଣେ ମରଣ ।"

ବିମଳାର ଯତ୍ନରେ ଶୈଳଜା କିଛି ସୁସ୍ଥ ହେଲା ସତ୍ୟ, କିନ୍ତୁ ଆଉ ଶଯ୍ୟାରୁ ଉଠିଲା ନାହିଁ । ଦିନକୁ ଦିନ ଅସ୍ଥି ଚର୍ମ ସାର ହେଲା । ଯେପରି ଅବସ୍ଥା, ସେଥିରେ ତାର ବଞ୍ଚିବାର ଆଶା ରହିଲା ନାହିଁ ।

ଏତେ ଦିନ ଶୈଳଜାର ବଳ ଥିଲା, ସାମର୍ଥ୍ୟ ଥିଲା, ସମସ୍ତ ଦିନ ଦାସୀ ପରି ସଂସାରର କାମଦାମ କରୁଥିଲା । ; ସୁତରାଂ ଭଲ ହେଉ; ମନ୍ଦ ହେଉ, ଦୁଇ ସନ୍ଧ୍ୟାରେ ଦୁଇଟା ଅନ୍ନ ପାଉଥିଲା । ଏବେ କିଏ ତାର ଅନ୍ନବସ୍ତ୍ର ଯୋଗାଇବ ? କିଏ ତାର ରୋଗର ପରିଚର୍ଯ୍ୟା କରିବ ? ସଂସାରରେ ଏବେ ତାର କୌଣସି ପ୍ରୟୋଜନ ନାହିଁ, ସେ ଏବେ କେବଳ ମାତ୍ର ବୋଝ ହୋଇ ପଡ଼ିଛି । ଶାଶୁ ନଣନ୍ଦ ଭାବିଲେ, ଏବେ ଆଉ ତାକୁ ଅନର୍ଥକ ଘରେ ରଖିବା ଦରକାର ନାହିଁ । ବାପ ଘରକୁ ପଠାଇ ଦେବା ଉଚିତ୍ । ଏହି ଅଲକ୍ଷଣୀ ବହୂକୁ ଘରକୁ ଆଣି ଏତେ ଅମଙ୍ଗଳ ଘଟିଛି । ବର୍ଷକ ମଧ୍ୟରେ କର୍ତ୍ତା ମରିଗଲେ, ନଟବରର ଏହି ଦଶା ହୋଇଛି । ଏବେ ଶଙ୍ଖିନୀ ବହୂକୁ ଘରୁ ବାହାର କରି ଦେଇ ପାରିଲେ, ମଙ୍ଗଳ ହୋଇପାରେ । ଏହି ସବୁ ଭାବି ଗୃହିଣୀ ବଧୂର ବାପଘରକୁ ତାକୁ ନେଇ ଯିବା ପାଇଁ ସମ୍ବାଦ ଦେଲେ ।

ଶୈଳଜାର ବାପଘରର ସମସ୍ତେ ତାହାକୁ ଏକାଥରକେ ଭୁଲି ଯାଇ ନ ଥିଲେ ସୁଦ୍ଧା ନିତାନ୍ତ ଅନ୍ତରକଷ୍ଟରେ ତାର ଖୋଜ ଖବର ନେଉ ନ ଥିଲେ । ଏକ୍ଷଣି ତାର ଏପରି ସାଂଘାତିକ ପୀଡାର ସମ୍ବାଦ ଶୁଣି ସମସ୍ତେ ଅତ୍ୟନ୍ତ ଦୁଃଖିତ ହେଲେ ସତ; କିନ୍ତୁ ପୂର୍ବ ଅପମାନ କଥା ସ୍ମରଣ କରି କେହି ସୋନପୁରକୁ ଆସ ତାକୁ ଦେଖି ଯିବାକୁ ସ୍ୱୀକୃତ ହେଲେ ନାହିଁ । ପିତା କହିଲେ; "ଯାଉ ସେ ଝିଅ ମରିଗଲେ ମଙ୍ଗଳ । ଏତେ ଦିନ ତ ଭାବୁଥିଲି ଶୈଳଜା ମରି ଯାଇଛି"; କିନ୍ତୁ ମାଆର ପ୍ରାଣ କଣ ସ୍ଥିର ରହିପାରେ ? ସେ ଅନେକ କାନ୍ଦି, ରଡି, ପାଲିଙ୍କି ଓ ଲୋକ ସଙ୍ଗରେ ତାଙ୍କର ମଧ୍ୟମ ପୁତ୍ରଙ୍କୁ ପଠାଇ ଦେଲେ ।

ଶାଶୁ ଓ ନଣନ୍ଦ ବହୂ ପଠାଇବାକୁ ଏଥର କୌଣସି ଆପତ୍ତି କଲେ ନାହିଁ । ଶୈଳଜାର ଭ୍ରାତା ଯେଉଁଦିନ ଆସିଲେ, ତହିଁ ଆର ଦିନ ବଡିସକାଳରୁ ଯାତ୍ରାର ସମୟ

ହେଲା । ଶୈଳଜା ଅନେକ ଦିନ ପରେ ପିତ୍ରାଳୟକୁ ଗଲିଲା । ଅନେକ ଦିନରୁ ସ୍ନେହ ମମତାରୁ ବଞ୍ଚିତ ରହି ପିତା ମାତାଙ୍କର ମୁଖ ଦେଖିବାକୁ ଗଲିଲା; କିନ୍ତୁ ଅଭାଗିନୀର ଅନ୍ତରରେ ସେଥିରେ ବିନ୍ଦୁମାତ୍ର ସୁଖର ସଞ୍ଚାର ହେଲା ନାହିଁ । ସେ ଆଜି ହସିବାକୁ ଖେଳିବାକୁ ଯାତ୍ରା କରନ୍ତା, ସେ ଅବିରାମ ଅଶ୍ରୁ ଜଳରେ ଭାସୁଛି । ତାର ହୃଦୟ ଯନ୍ତ୍ରଣା ଆଜି ଯେପରି ଶତ ଗୁଣରେ ବର୍ଦ୍ଧିତ ହୋଇଛି । ଶୈଳଜା ବିଦାୟ ନେବା ପାଇଁ ବିମଳାକୁ ଡାକି ପଠାଇଛି; ବିମଳା ଶୁଣିବା ମାତ୍ରକେ ଦୌଡି ଆସିଛି । ଶୈଳଜାକୁ ଦେଖିଲା କ୍ଷଣି ତାର ଚକ୍ଷୁରୁ ଧାରା ଗଡିଲା । କିଛି ସମୟ ପର୍ଯ୍ୟନ୍ତ କେହି କୌଣସି କଥା କହି ପାରିଲେ ନାହିଁ । ପରେ ଅନେକ କଷ୍ଟରେ ଶୈଳଜା ଚକ୍ଷୁ ପୋଛି କହିଲା, "ନାନୀ, ମୁଁ ଏ ଜନ୍ମ ପାଇଁ ବିଦାୟ ହେଲି ।" କାନ୍ଦି କାନ୍ଦି ଓଷ୍ଠାଧର କମ୍ପାଇ ବିମଳା ଉତ୍ତର କଲା, "ଯାଅ ଭଉଣୀ ଏବେ ତୋର ହାଡ଼ ଶାନ୍ତ ହେବ ।"

ଶୈଳ - ନା ନାନୀ, ମୋର ଏହି ଜ୍ୱାଳା ଶାନ୍ତ ହେବାର ନୁହେଁ । ମୁଁ ବାପଘରକୁ ଗଲେ ମାଆ ବାପାଙ୍କର ସ୍ନେହ-ମମତା ପାଇବି ସତ; କିନ୍ତୁ ଆଉ ବଞ୍ଚିବି ନାହିଁ । ଆଉ କେଉଁ ସୁଖରେ ବଞ୍ଚିବି ? ମୁଁ ସେଠାକୁ ଯିବାକୁ ଚାହେଁ ନାହିଁ । ଯେଉଁ କେତୋଟି ଦିନ ବଞ୍ଚିବି ଏହିଠାରେ ରହିବି । ତୁ ଦାଦାଙ୍କୁ କହ, ମୁଁ ଯିବି ନାହିଁ ।

ବିମଳା - ସେ କ'ଣ ବୋହୂ ! ଆଉ ଏତେ କଷ୍ଟ ପାଇବୁ କାହିଁକି ? ଯାଆ, ମାଆ ବାପାଙ୍କ ପାଖକୁ ଯା, ଯେଉଁ କେତୋଟି ଦିନ ରହିବୁ, ଦୁଇଟା ଭଲ କଥା ଶୁଣି ପାରିବୁ । ମାଆ ବାପାଙ୍କର ଯତ୍ନରେ ତୋର ରୋଗ ଛାଡିଯିବ, ତୁ ବଞ୍ଚିବୁ ।

ଶୈଳ - ମୋର ଏହି ରୋଗ ଛାଡିବ ନାହିଁ ଜୀବନରେ ମୋର ସୁଖ ନାହିଁ; ମରିଲେହିଁ ମୁଁ ଶାନ୍ତି ପାଇବି । ମୁଁ ବାପଘରକୁ ଯାଇ କିପରି ସୁଖୀ ହେବି ? ସ୍ୱାମୀଙ୍କ ଯେମିତି ଅବସ୍ଥା ଦେଖି ଯାଉଛି, ସେଥିରେ ମୁଁ ସ୍ୱର୍ଗକୁ ଯାଇ ମଧ୍ୟ ସୁଖୀ ହେବି ନାହିଁ । ନାନୀ । ମୋ ପରି ହତଭାଗିନୀର ମରଣ ହିଁ ମଙ୍ଗଳ ।

ମର୍ମ ବେଦନାରେ ଶୈଳଜାର କଣ୍ଠରୋଧ ହୋଇ ଆସିଲା, ଅବିରଳ ଆଖିରୁ ଧାରା ଝରିବାକୁ ଲାଗିଲା । ବିମଳା ଅଞ୍ଚଳ କାନିରେ ତାର ଚକ୍ଷୁ ପୋଛି ଦେଲା । ଶୈଳଜା ଫେର୍ କହିଲା, "ନା ବିମଳା, ଯଥାର୍ଥରେ ମୋର ମାଆ ବାପାଙ୍କ ପାଖକୁ ଯିବାର ଇଚ୍ଛା ନାହିଁ । ତୁ ଦାଦାଙ୍କୁ କହିଦେ, ମୁଁ ଯିବି ନାହିଁ । ସେମାନେ ମୋରି ପାଇଁ ଅନେକ ଯାତନା ପାଇଛନ୍ତି । ଏବେ ବୋଧହୁଏ ଅନେକ ଅଂଶରେ ଭୁଲିଛନ୍ତି, ମୁଁ ଆଉ ଦୁଇ ଦିନ ପାଇଁ ସେମାନଙ୍କୁ ଦେଖା ଦେଇ ସେମାନଙ୍କର ଶୋକ ବୃଦ୍ଧି କରିବି ନାହିଁ ।

ମୋର ମରଣ ନିକଟ, ଏହିଠାରେ ହିଁ ମୋର ମରିବା ଭଲ । ଏଠାରେ ଥାଇ ମଲେ, ମୁଁ ସ୍ୱାମୀଙ୍କର ହାତରୁ ନିଆଁ ପାଇବି ଆଉ ତାଙ୍କୁ ଦେଖି ମରି ପାରିଲେ ସେହି ପୁଣ୍ୟରେ ମୁଁ ପରଲୋକରେ ସୁଖୀ ହେବି ।

ଶୈଳଜାର କଥାଗୁଡ଼ିକ ଶୁଣି ବିମଳାର ଛାତି ଫାଟିଯିବାକୁ ଲାଗିଲା । ବିମଳା କାନ୍ଦି କାନ୍ଦି କହିଲା, "ହେ ଜଗଦେବ ବନ୍ଧୋ ! କିଏ କହେ, ତୁମ୍ଭେ ଧର୍ମାଧର୍ମର ବିଚାରକର୍ତ୍ତା ! ଧର୍ମର ପ୍ରତିଫଳ କଣ ଏଇଟା ? ସଂସାରରେ ଭଲ ହେଲେ କ'ଣ କେବଳ ଦୁଃଖ ଭୋଗ କରିବାକୁ ହୁଏ ।

ଏହିପରି ସମୟରେ ଶୈଳଜାର ଭ୍ରାତା ଆସି କହିଲେ, "ବାହକ କୋହ୍ଲମାନେ ପ୍ରସ୍ତୁତ, ଆଉ ବିଳମ୍ବ କାହିଁକି ?" ବିମଳା ଶୈଳଜାର ହାତ ଧରି କହିଲା, "ଭଉଣୀ ! ମା ଦୁର୍ଗାଙ୍କ ନାମ ଧରି ଯାତ୍ରା କର । ମନକୁ ପ୍ରବୋଧ ଦିଅ, ଭଗବାନଙ୍କୁ ଡାକ । ମୁଁ ନିଶ୍ଚୟ କରି କହୁଛି, ଅଚିରାତ୍ ତୋର ଦୁଃଖର ଅବସାନ ହେବ । ମୋର କଥା ବିଶ୍ୱାସ କର, ଲୋକଙ୍କର ସୁଖ ପରେ ଦୁଃଖ, ଦୁଃଖ ପରେ ସୁଖ ହୋଇଥାଏ ।"

କାନ୍ଦି କାନ୍ଦି ଶୈଳଜା ବିମଳର ହାତ ଉପରେ ହାତ ରଖି କହିଲା, "ବିମଳା ! ପ୍ରାଣସଖି ! ମୁଁ ଚାଲିଲି । ବୋଧହୁଏ ମୋର ଏହି ଦେଖା ହିଁ ଶେଷ ଦେଖା । ଏତେ ଦିନ ମୁଁ ତୋର ମୁଖ ଚାହିଁ ବଞ୍ଚିଥିଲି, ଆଜି ମତେ ଏ ଜନ୍ମ ପାଇଁ ବିଦାୟ ଦେ । ଈଶ୍ୱରଂକ ଠାରେ କାୟୋ ମନ ବାକ୍ୟରେ ପ୍ରାର୍ଥନା କରେ, କିମିତି ଜନ୍ମେ ଜନ୍ମେ ତତେ ହିଁ ସଖୀ ରୂପେ ପାଇବି ।"

ଅବିରାମ ଅଶ୍ରୁଧାରାରେ ଉଭୟେ ଭାସିଯିବାକୁ ଲାଗିଲେ । "ଶୈଳଜା" ଏତିକି ମାତ୍ର କହି ବିମଳାର ଯେମନ୍ତ ବାକ୍‌ରୋଧ ହେଲା, ବିମଳା ଆଉ କିଛି କହିପାରିଲା ନାହିଁ । ଶୈଳଜା କହିଲା, "କାନ୍ଦ ନାହିଁ ନାନି ! ମତେ ଭୁଲିଯାଅ; ତୋର ସୁଖର ଜୀବନ୍; ତୁ କାହିଁକି ମୋର ଦୁଃଖରେ ଜଳିବୁ, ପୋଡିବୁ ? ତୋ'ଠାରେ ମୁଁ ଗୋଟାଏ ଶେଷ ପ୍ରାର୍ଥନା ଜଣାଉଛି । "ସ୍ୱାମୀଙ୍କର ଯେପରି ଅବସ୍ଥା ସେଥିରେ ଦୁଇଦିନ ପରେ ଆଉ ସେମାନଙ୍କୁ ଅନ୍ନ ମଧ ମିଳିବ ନାହିଁ । ତୋ ଠାରେ ମୋର ଯେଉଁ ଟଂକା ଅଛି, ତୁ ସେହି ଟଂକା ମଧରୁ ନିଜେ ଦାନ କରୁଛି କହି ଛଳନାରେ ପ୍ରୟୋଜନ ମତେ କିଛି କିଛି ଦେଉଥିବୁ । ମୋର ଶ୍ୱଶୁରଙ୍କର ଟଙ୍କା ଆଉଣୁଁ ସ୍ୱାମୀ, ଶାଶୁ, ନଣନ୍ଦ ଯେମିତି ଅନାହାରରେ ନ ରହନ୍ତି, ତୁ ସେଇଟା ଦେଖୁଥିବୁ । ମୁଁ ଏବେ ଆସେଁ । ଜଗଦୀଶ୍ୱର ତୋର ମଙ୍ଗଳ କରନ୍ତୁ ।"

କାନ୍ଦି କାନ୍ଦି ବିମଳା ଶୈଳଜାକୁ ପାଲିଙ୍କିରେ ଉଠାଇ ଦେଲା, ବାହକଗଣ ବାୟୁ ବେଗରେ ଧାଇଁଲେ । ପାଲିଙ୍କି ଯେତେକ୍ଷଣ ଦୃଷ୍ଟି ଭିତରେ ଥିଲା, ସେତେକ୍ଷଣ ବିମଳା ସେହି ଆଡକୁ ଚାହିଁ ରହିଲା ।

ଶୈଳଜା ପିତ୍ରାଳୟକୁ ଯିବ ଶୁଣି ବିମଳା ସେହି ନୋଟ୍‌ଗୁଡିକ ସଙ୍ଗରେ ଆଣିଥିଲା: କିନ୍ତୁ ଶୈଳଜାର କଥାରୁ ସେ ବୁଝିଲା ଯେ ଏବେ ନୋଟଗୁଡିକ ପାଇଲେ ଶାଶୁ ନଣନ୍ଦଙ୍କୁ ଦେଇଯିବ ନାହିଁ । ଶୈଳଜାର ଶାଶୁ ନଣନ୍ଦଙ୍କ ବିମଳାର ଅତ୍ୟନ୍ତ ରାଗ । ଏତେଗୁଡିଏ ଟଙ୍କା ସେମାନେ ପାଇବେ, ଏଇଟା ତାର ପ୍ରାଣ ସହିଲା ନାହିଁ । ସେ କୌଣସି କଥା ନ କହି ନୋଟଗୁଡିକ ଲୁଚାଇ ରଖିଲା ।

ସେହି ଦିନଠାରୁ ଦିନକୁ ପାଇଁ ସୁଦ୍ଧା ବିମଳା ଆଉ ସାମନ୍ତ ଘରକୁ ଆସି ନ ଥିଲା ।



# ନବମ ପରିଚ୍ଛେଦ

"ଅପକାର ଭୁଲିଯାଇ କରେ ଉପକାର,

ସେହି ସେ ପରମ ସାଧୁ ମହାପୁଣ୍ୟ ତାର ।

ପିତ୍ରାଳୟକୁ ଆସି ପିତାମାତାଙ୍କ ପରମ ଯତ୍ନରେ ଓ ଅନେକ ରକମର ଚିକିତ୍ସାରେ ଶୈଳଜାର ରୋଗର ଉପଶମ ହେଲା; କିନ୍ତୁ ତାର ମନର ପୀଡା ଯିବାର ନୁହେଁ । ଶୈଳଜା ତିନିବର୍ଷ ଯାବତ୍ ପିତାମାତାଙ୍କର କୋଳ ଛଡା ହୋଇ ଅନେକ ଦୁଃଖ କଷ୍ଟ ପରେ ଫେର ସେହି ସ୍ନେହ ମୟ ମାତାପିତାଙ୍କଠାକୁ ଆସିଛି । ଏତେ ଦିନ ପରେ ବାଳିକା ମନ ଅନୁଯାୟୀ ଆହାର ବିହାର କରିବାକୁ ପାଉଛି; ନିଃସଙ୍କୋଚରେ ମନର କଥା କହିବାକୁ ଲୋକ ପାଉଛି; କିନ୍ତୁ ତାର ମନରେ ତିଳେମାତ୍ର ସୁଖ ନାହିଁ । ମାତା ପ୍ରତ୍ୟହ ସକାଳୁ ଜଳଖିଆ ପ୍ରସ୍ତୁତ କରି କନ୍ୟାକୁ ଖୁଆନ୍ତି । ଶୈଳଜାର ତିନି ଭ୍ରାତୃବଧୂ ସର୍ବଦା ତାହା ସଙ୍ଗରେ କେତେ ଆଳାପ -କୌତୁକ କରନ୍ତି । ତଥାପି ତାର କାହିଁରେ ହିଁ ସୁଖ ନାହିଁ । ଆଉ କେହି ହୋଇଥିଲେ ହୁଏତ ଏହି ଅବସ୍ଥାରେ ପରମ ସୁଖରେ ରହି ପାରିଥାନ୍ତା: କିନ୍ତୁ ଶୈଳଜାର ହୃଦୟକୁ ବିଧାକୁ ସେପରି ଭାବରେ ଗଢ଼ି ନ ଥିଲେ । ଶୈଳଜା ଯେତେବେଳେ ସେତେବେଳେ ଏକାକିନୀ ବସି ଭାବୁଥିଲେ; କେବେ ଅବା ନିଜ ମନକୁ କାନ୍ଦୁଥାଏ । ତାର ଭାବନା ଆଉ କିଛି ନୁହେ, କେବଳ ତାର ସ୍ୱାମୀ କିପରି ଅଛନ୍ତି;- ସୁସ୍ଥ ଅଛନ୍ତି କି ପୀଡିତ ଅଛନ୍ତି ! ଏବେ ସୁଦ୍ଧା କ'ଣ ସିମିତି ଭାବରେ ଅଛନ୍ତି ? ଏହି ଚିନ୍ତାରେ ହିଁ ସେ ସର୍ବଦା ବ୍ୟାକୁଳ ହେଉଛି । ଚିନ୍ତା ପାଇଁ ତାର ଶରୀରର ତେଜବଳ ଫେରିଲା ନାହିଁ । ପୂର୍ବ ରୂପଲାବଣ୍ୟ ଆଉ ହେଲା ନାହିଁ । କନ୍ୟାର ରୂପ ଦେଖି ମାତା ଅନେକ ଦିନ କହନ୍ତି, "ମା ! ତୁ କାହିଁକି ଚିନ୍ତା କରୁ ? ଈଶ୍ୱର ଯଦି ତୋର ପାଞ୍ଚଟା ଭାଇକୁ ସ୍ୱଚ୍ଛନ୍ଦରେ ରଖନ୍ତି, ତେବେ ତୋର ଅନ୍ନବସ୍ତ୍ରର କଷ୍ଟ ହେବ ନାହିଁ । କପାଳ ଦୋଷକୁ ସ୍ୱାମୀ ଘରେ ସୁଖ ହେଲା ନାହିଁ, ସେଥିପାଇଁ କଣ ଏତେ ଭାବିବାକୁ ହେବ ?" ଶୈଳଜାର ମନ କାହିଁରେ ହିଁ ସ୍ଥିର ହୁଏ ନାହିଁ ।

ଏହିପରି ପ୍ରାୟ ବର୍ଷେ କଟିଗଲା । ମଧରେ ମଧରେ ବିମଳା ପତ୍ର ଲେଖି ତାର ଶାଶୁଘରର ଖବର ଜଣାଉଥିଲା । ପାଞ୍ଚ ଛଅ ମାସ ହେଲା, ବିମଳା ଶାଶୁଘରକୁ ଯାଇଛି; ସେହିଠାରୁ ସେ ଶୈଳଜାର ଶାଶୁଘରର ଖବର କିଛି ଜାଣୁ ନ ଥିଲେ; ଶୈଳଜା ମଧ ଆଉ କୌଣସି ଖବର ପାଉ ନାହିଁ । ତା ମନରେ ସର୍ବଦା କେତେ ଦୁର୍ଭାବନା ଜାଗି ଉଠେ । କେବେ ଭାବେ: ସ୍ୱାମୀ ବୋଧହୁଏ ଏତେ ଦିନକୁ ସର୍ବସ୍ୱାନ୍ତ ହୋଇ ଅନ୍ନ

ଜ୍ୱାଳାରେ କଷ୍ଟ ପାଉଥିବେ । ଏପରି ସମୟରେ ଦିନେ ବିମଳାର ପତ୍ର ଆସିଲା ।

ବିମଳା ଲେଖିଛି -

"ପ୍ରିୟ ସଖି ! ମୁଁ ଏହି ଛଅ ମାସ ପରେ ସୋନପୁରକୁ ଆସିଛି । ଆମ୍ଭର ଘରର ସମସ୍ତ ମଙ୍ଗଳ । ତୋର ଶାଶୁଘରର ଅବସ୍ଥା ଆଜିକାଲି ନିତାନ୍ତ ଶୋଚନୀୟ । ଲକ୍ଷ୍ମୀର ପାପର ପ୍ରାୟଶ୍ଚିତ୍ତ ଆରମ୍ଭ ହୋଇଛି, ସେ ଏବେ ପକ୍ଷାଘାତ ରୋଗରେ ଅଚଳ; ଉଠି ବାହାରରେ ପ୍ରସ୍ରାବ କରିବାର ମଧ ଶକ୍ତି ନାହିଁ । ବିଛଣାରେ ମଳ-ମୂତ୍ର ତ୍ୟାଗକରି ତାହାରି ମଧରେ ପଡିଥାଏ । ଯେଉଁପରି କର୍ମ, ସେହିପରି ଫଳ । ଯେତେବେଳେ ରୋଗ ନ ଥିଲା, ସେତେବେଳେ ରୋଗର ବାହାନା କରୁଥିଲା, ପରମେଶ୍ୱର ଅଛନ୍ତି ତ ! ତୋର ଶାଶୁ ଏବେ ରୋଦନ ହିଁ ସାର କରିଛନ୍ତି । ନଟବର ଦାଦା କପିଳେଶ୍ୱର ପଣ୍ଡାଙ୍କ ସଙ୍ଗରେ ମକଦ୍ଦମା କରୁଛନ୍ତି । ଘରର ଜିନିଷପତ୍ର ବିକି ମକଦ୍ଦମାର ଖର୍ଚ୍ଚ ଚଳାଉଛନ୍ତି: ତାଙ୍କର ମଧ ପ୍ରାୟଶ୍ଚିତ୍ତ ଆରମ୍ଭ ହୋଇଛି । ତୁ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ମୋଠାରେ ଟଙ୍କା ରଖି ଯାଇଥିଲୁ; ଭଉଣୀ, ମୋଦ୍ୱାରା ତାହା ହେବ ନାହିଁ ମୋତେ ମାଫ କରିବୁ । ଯଦି ପାରୁ ଏବଂ ଇଚ୍ଛା ହୁଏ, ତେବେ ତୁ ନ ହୁଏ ଥରେ ଆସି ଦେଖି ଯା' । ତାହା ଯଦି ନ ହୁଏ, ମତେ ଲେଖିବୁ ମୁଁ ତୋର ଟଙ୍କା ତୋଠାକୁ ପଠାଇ ଦେବି । ମୁଁ ଭଲ ଅଛି, ତତେ ଦେଖିବାକୁ ବଡ ଇଚ୍ଛା ହେଉଛି ।" ଇତି

ତୋର ସ୍ନେହର ବିମଳା

ବିମଳା ଝିଅଟି ଆଉ ସବୁ ବିଷୟରେ ଭଲ, କିନ୍ତୁ ଲକ୍ଷ୍ମୀ ଓ ତାର ମାତା ଉପରେ ତାର ବଡ ରାଗ । ସେମାନଙ୍କ ଦୁରବସ୍ଥା ଦେଖି ବାସ୍ତବିକ୍ ସେ ବଡ ସନ୍ତୁଷ୍ଟ ହୋଇଥିଲେ । ସେ ଭାବିଥିଲା, ଶୈଳଜା ମଧ ଏହି ସମ୍ବାଦରେ ସୁଖୀ ହେବ, କିନ୍ତୁ ଫଳରେ ବିପରୀତ ହେଲା । ଶୈଳଜାର ସୁଖ ହେବା ଦୂରେ ଥାଉ, ଦୁଃଖ ହେଲା । ଶାଶୁ ନଣନ୍ଦ ଆତ୍ମୀୟଜନ, ସେମାନେ କଷ୍ଟ ପାଉଛନ୍ତି ଶୁଣି କ'ଣ ଶୈଳଜା ପରି ଝିଅ ସ୍ଥିର ରହିପାରେ ? ତାହା ପରେ ପୁଣି ସ୍ୱାମୀଙ୍କ ଏହି ଦୁର୍ଦ୍ଦଶା । ଶୈଳଜା ବଡ ଚିନ୍ତାନ୍ୱିତ ହେଲା । ଭାବି ଚିନ୍ତି ସ୍ଥିର କଲା, ସୋନପୁର ଯାଇ ଥରେ ସେମାନଙ୍କୁ ଦେଖି ଆସିବ । ମାଆ ପାଖକୁ ଯାଇ ମନର ଇଚ୍ଛା ବ୍ୟକ୍ତ କଲା । ମାଆ କହିଲେ, "ସେ କ'ଣ ? ଫେର ସେଠାକୁ କେଉଁ ମୁହରେ ଯିବୁ ?

ଏକେ ହିନ୍ଦୁ ଘରର ଝିଅ, ତହିଁରେ ପୁଣି ବାଳିକା । ମାଆ ପାଖରେ ଯାଚି

କହିଲା, 'ଶାଶୁ ଘରକୁ ଯିବି' । ବଡ ଲଜ୍ଜା ହେଲା । ଶୈଳଜ୍ଜା ଆଉ କୌଣସି କଥା ନ କହି ବିମଳାର ପତ୍ରଖଣ୍ଡିକ ମାଆର ହାତକୁ ବଢ଼ାଇ ଦେଲା । ଶୈଳଜ୍ଜାର ମାତା ଲେଖାପଢ଼ା ଶିଖିଥିଲେ, ପତ୍ରଖଣ୍ଡିକ ପଢ଼ି ସମସ୍ତ ବୁଝିଲେ ଏବଂ କହିଲେ, "ତା ବେଶ୍ ହୋଇଛି, ଯେମିତି କର୍ମକୁ ସେମିତି ଫଳ । ତା' - ତୋର ଏତେ ମଥାବଥା କାହିଁକି ? ସେମାନେ ମରନ୍ତୁ ବଞ୍ଚନ୍ତୁ, ତୋର କ୍ଷତ ବୃଦ୍ଧି କ'ଣ ? ତୁ ମନେ କର ଯେ 'ମୁଁ ବିଧବା ହୋଇଛି', ମୋର ଶାଶୁ ଘର ଛାରଖାର ହୋଇଛି ।"

ବଡ ଦୁଃଖରେ ଶୈଳଜ୍ଜାର ମାତା ଏହି କଥାଗୁଡିକ କହିଲେ । ଶୈଳଜ୍ଜା କହିଲା, ଯାହା ହେଉ ପଛକେ ଏ ସମୟରେ ଥରେ ଦେଖି ଆସିବା ଉଚିତ ।"

ମାତା କାହିଁରେ ହଁ ସମ୍ମତ ହେଲେ ନାହିଁ । ତାଙ୍କର ସୁନାର ପୁତଳିକୁ ଯେଉଁମାନେ ଏତେ କଷ୍ଟ ଦେଇଛନ୍ତି ସେମାନଙ୍କ ଉପରେ ପୁଣି ଦୟା ।

କ୍ରମେ କଥା ସମସ୍ତଙ୍କ କାନକୁ ଗଲା । ଶୈଳଜ୍ଜାର ଅତ୍ୟନ୍ତ ଆଗ୍ରହ ଦେଖି ତାର ପିତା ପୁତ୍ରମାନଙ୍କ ସଙ୍ଗେ ପରାମର୍ଶ କରି ଯିବାକୁ ଅନୁମତି ଦେଲେ । ଶୈଳଜ୍ଜା ଜଣେ ଭ୍ରାତାକୁ ସଙ୍ଗରେ ଘେନି ସୋନପୁରକୁ ଯାତ୍ରା କଲା ।



# ଦଶମ ପରିଚ୍ଛେଦ

"ଅତି ବଡ ଶତ୍ରୁ ମଧ୍ୟ ପଡିଲେ ବିପଦେ:
ଦେଖିଣ ଦୁର୍ଦ୍ଦଶା ତା'ର ସାଧୁପ୍ରାଣ କାନ୍ଦେ ।"

ପରଦିନ ବେଳା ଘରିଦଣ୍ଡ ଥାଉଣୁ ଶୈଳଜା ସୋନପୁରରେ ପହଞ୍ଚିଲା । ଘର ମଧ୍ୟରେ ପ୍ରବେଶ କରି ଦେଖିଲା, ଘର ଯେପରି ପୋଡାଘର ହୋଇଛି । ଘରିପାର୍ଶ୍ୱରେ ଆବର୍ଜ୍ଜନ ଜଙ୍ଗଲ ଘେରି ରହିଛି । ଘରଗୁଡିକର ଚୂନକାମ ଖସି ପଡ଼ିଛି, ସେଥିରେ ବିରୁଡି, ଝିଟିପିଟି, ମାଙ୍କଡ଼ସା ପ୍ରଭୃତି ବାସ କରୁଛନ୍ତି । ଘରର ଘରିପାଖରେ ଧୂଳି ଉଡୁଛି, ମେଢ ଉପରେ ସାତପୁର ଧୂଳି ବସିଛି । ଶୈଳଜାର ଶ୍ୱଶୁର ଥିଲା ବେଳେ ଘରେ ଖଣ୍ଡିଏ କୁଟା ମଧ୍ୟ ପଡ଼ିପାରୁ ନଥିଲା । ଘର-ଦୁଆରର ଏପରି ଦୁର୍ଦ୍ଦଶା ଦେଖି ଶୈଳଜା ଦୀର୍ଘ ନିଶ୍ୱାସ ତ୍ୟାଗ କଲା । ତାପରେ ଭିତିର ଘରକୁ ଯାଇ ଦେଖିଲା, ତାର ଶାଶୁ ଅତି ଜୀର୍ଣ୍ଣଶୀର୍ଣ୍ଣ ଦେହରେ ଖଣ୍ଡିଏ ମଇଳା ଲୁଗା ପିନ୍ଧି ଦ୍ୱାର ଦେଶରେ ବସି କାନ୍ଦୁଛନ୍ତି ଦେଖି, ଶୈଳଜାର ବକ୍ଷ ଦୁଲୁ ଦୁଲୁ ହୋଇ କମ୍ପି ଉଠିଲା । ବଧୂ ଶାଶୁଂକ ପାଦତଳେ ଭୂମିଷ୍ଠ ପ୍ରଣାମ କଲା । ଶାଶୁ କୌଣସି କଥା କହିଲେ ନାହିଁ, ଉଠି ଠିଆହେଲେ । ସେତେବେଳେ ଘର ମଧ୍ୟରୁ ଲକ୍ଷ୍ମୀ "ମାଆ ଗୋ ! ଯାଏଁ ଗୋ !" ବୋଲି ଥରେ ଅତ କାତର ଧ୍ୱନି କଲା । ଶୈଳଜା ଶାଶୁଙ୍କୁ ପଚାରିଲା, "ମା ! ନାନୀଂକର ପୀଡା କ'ଣ ଖୁବ୍ ଗୁରୁତର ?"

ଗୃହିଣୀ କାନ୍ଦି କାନ୍ଦି କହିଲେ, "ମା ! ଆମ୍ଭର ପାପର ଫଳ ଫଳୁଛି, ତୁ ଆଉ କାହିଁକି ଏଠାକୁ ଆସିଛୁ ? ଆମ୍ଭେମାନେ ଅଳ୍ପଦିନ ମଧ୍ୟରେ ଅନାହାରରେ ମରିଯିବୁ ।"

ବଧୂ ପ୍ରତି ଶାଶୁର ସେପରି ବିରକ୍ତି ନାହିଁ, କଥାରେ କହନ୍ତି - "ଦାନ୍ତ ଥାଉଁ ଲୋକେ ଦାନ୍ତର ମର୍ଯ୍ୟାଦା ବୁଝନ୍ତି ନାହିଁ ।" ବଧୂ ଯେତେଦିନ ଏଠାରେ ଥିଲା, ସେତେବେଳେ ସେ ବଧୂର ଗୁଣ ବୁଝିପାରି ନାହାନ୍ତି । ତାର ଅଭାବରେ ସଂସାରର ଯେଉଁ ଦୁର୍ଦ୍ଦଶା ହୋଇଛି; ତାହା ଦେଖି ଶାଶୁ ଠାକୁରାଣୀ ବଧୂର ଗୁଣ ଅନେକାଂଶରେ ବୁଝି ପାରିଛନ୍ତି । ଆଜି ଏହି ବିପଦ ସମୟରେ ସେ ନିଜେ ଯାଚି ହୋଇ ସେମାନଙ୍କୁ ଦେଖିବାକୁ ଆସିଛି । ଆଜି ସେ ବହୂକୁ ଚିହ୍ନି ପାରିଲେ, ଏପରି ସ୍ୱାଧୀକୁ ସେ ଅନେକ ଯନ୍ତଣା ଦେଇଛନ୍ତି ଭାବି ମନେ ମନେ ବିଶେଷ ଦୁଃଖିତା ମଧ୍ୟ ହେଲେ ।

ଶୈଳଜା, ଶାଶୁର ଶୁଷ୍କ ମୁଖ ଦେଖି ବୁଝିଲା, ତାଂକର ଆଜି ଆହାର

ହୋଇନାହିଁ । କୌଣସି କଥା ନ କହି ଘର ମଧ୍ୟରେ ପ୍ରବେଶ କଲା । ଯେଉଁ ଘରେ ଲକ୍ଷ୍ମୀ ଶୋଇଥିଲା ସେହି ଘରକୁ ଯାଇ ଦେଖିଲା, ଲକ୍ଷ୍ମୀ ଯନ୍ତ୍ରଣାରେ ଛଟପଟ ହେଉଛି, ପାଖରେ କେହି ସୁଦ୍ଧା ଲୋକ ନାହାନ୍ତି । ଚାରିପାଖରେ ଭୟଂକର ଦୁର୍ଗନ୍ଧ ହେଉଛି । ଶୈଳଜା ଧୀରେ ଧୀରେ ଲକ୍ଷ୍ମୀର ପାଖକୁ ଯାଇ ଡାକିଲା, 'ନାନି' ! ଲକ୍ଷ୍ମୀ ଶୈଳଜାକୁ ଦେଖିବା ମାତ୍ରକେ ମୁହଁ ବୁଲାଇ ଦେଲା, ତାର ମୁଣ୍ଡରେ ଯେପରି ବଜ୍ରପାତ ହେଲା । ସେ ଭାବିଲା; ଯେଉଁ ବହୂକୁ ମୁଁ ଏତେ କଷ୍ଟ ଦେଇଛି, ସେ ଏବେ ସମୟ ପାଇ ତାର ପ୍ରତିଶୋଧ ନେବାକୁ ଆସଛି । ଯାର ଯେପରି ମନ, ସେ ପରକୁ ମଧ ସେପରି ଭାବେ ।

ଲକ୍ଷ୍ମୀ କୌଣସି କଥା କହିଲା ନାହିଁ ଦେଖି ଶୈଳଜା ତାର ଶଯ୍ୟା ପାର୍ଶ୍ୱରେ ବସି ତାର ଦେହରେ ହାତ ବୁଲାଇ କହିଲା, ନାନି ! ତୁମ୍ଭର ବେରାମ କେତେ ଦିନ ହେଲା ?"

ଲକ୍ଷ୍ମୀ ଏଥର ମଧ କଥା କହିଲା ନାହିଁ । ଶୈଳଜା ମଧ ଆଉ କୌଣସି କଥା ନ କହି, ବାପଘରୁ ନିଜର ଯେଉଁ ବିଛଣା ଆଣିଥିଲା, ତାହାକୁ ଘରର ଅପର ପାର୍ଶ୍ୱରେ ପାରିଦେଲା, ତାହା ପରେ ନିଜର ଖଣ୍ଡିଏ ପରିଷ୍କାର ଲୁଗା ବାହାର କରି କହିଲା: "ନାନି ! ଏହି ଲୁଗାଖଣ୍ଡିକ ପିନ୍ଧ; ତୁମ୍ଭର ପିନ୍ଧଣା ଲୁଗା ଖଣ୍ଡିକ ବଡ ମଇଳା; ତା'ପରେ ଏହି ବିଛଣାକୁ ଉଠିଆସ, ଏପରି ମଇଳା ବିଛଣାରେ ଶୋଇଲେ ଆହୁରି ବେମାର ହେବ । ଏତେ ଦିନରୁ ଯଦି ମତେ ଥରେ ସମ୍ବାଦ ଦେଇଥାନ୍ତ, ତେବେ ତୁମ୍ଭଙ୍କୁ ଏତେ କଷ୍ଟ ପାଇବାକୁ ହୋଇ ନ ଥାନ୍ତା ।"

ଲକ୍ଷ୍ମୀର ହଲିବାର ଶକ୍ତି ନାହିଁ । ଶୈଳଜା ତାକୁ ଲୁଗା ଖଣ୍ଡିକ ପିନ୍ଧାଇ ଦେଇ ଧୀରେ ଧୀରେ ଅନ୍ୟ ବିଛଣାକୁ ଆଣିଲା । ତା'ପରେ କହିଲା, "ମୁଁ ଏତେ ଦିନ ପରେ ଆସିଲି, ମୋର ସଙ୍ଗରେ କ'ଣ ଗୋଟାଏ କଥା ମଧ-କହିବାକୁ ଯୋଗାଉ ନାହିଁ ନାନୀ !"

ଲକ୍ଷ୍ମୀ ଏବେ ସୁଦ୍ଧା କଥା କହିଲା ନାହିଁ, କିନ୍ତୁ ତାର ଚକ୍ଷୁରୁ ଧାର ଧାର ଜଳ ଗଡ଼ିବାକୁ ଲାଗିଲା । ଶୈଳଜାର ବ୍ୟବହାରରେ ବୋଧହୁଏ ପାଷାଣ ମଧ ତରଳିଯିବ, ଲକ୍ଷ୍ମୀ ତ ମନୁଷ୍ୟ ! ଆଉ କେତେକାଳ କଠୋର ରହି ପାରିବ ? ଆଜି ଚାରିମାସ ହେଲା, ସେ ଉତ୍‌ଥାନ ଶକ୍ତି ରହିତ ହୋଇ ମଳମୂତ୍ରରେ ପଡ଼ିଛି । ଏହି ଚାରିମାସ ମଧ୍ୟରେ ତାହାକୁ ଏପରି କରି ଯତ୍ନ ତ କେହି ନେଇ ନାହାଁନ୍ତି । ଏପରି ମଧୁର କଥା ତ କେହି କହି ନାହାନ୍ତି । ତାହାର ମାଆ ମଧ ତା ଉପରେ ଆଜିକାଲି ବିରକ୍ତ । ଆଜି ଦୁଇ ଦିନ ହେଲା ଲକ୍ଷ୍ମୀ ପାଣି ଟିକିଏ ପିଇ ନାହିଁ, କେହି ତାକୁ ଥରେ ଡାକି ମଧ ପଚାରି

ନାହାନ୍ତି; କିନ୍ତୁ ଆଜି ସେହି ବଧୂ ଯେ ତା'ର ଚକ୍ଷୁର ବିଷଥିଲା, ଯାହାକୁ ସେ ବିନା ଅପରାଧରେ ଅହର୍ନିଶ କେତେ ପୀଡନ କରିଛି, ସେହି ଭ୍ରାତୃବଧୂ ଆଜି ସ୍ୱହସ୍ତରେ ତାର ମଳ-ମୂତ୍ର ପରିଷ୍କାର କରୁଛି । ଆପଣାର ମାତା ପର୍ଯ୍ୟନ୍ତ ଘୃଣାରେ ତାର ପାଖକୁ ଆସୁ ନ ଥିଲେ ! ଆଜି ବଧୂ ଟିକିଏ ସୁଦ୍ଧା ଘୃଣା ନ କରି ତାର ଏତେଦୂର ଯତ୍ନକଲା ! ଲକ୍ଷ୍ମୀ ମଧ ବୁଝିଲା; ସେ ସାକ୍ଷାତ ଗୃହଲକ୍ଷ୍ମୀକୁ ପୀଡନ କରିଛି । ମନେ ମନେ ବଡ଼ ଅନୁତାପ କଲା । ଲକ୍ଷ୍ମୀ ଆଜି କଥା କହି ପାରିଲା ନାହିଁ, ନୀରବରେ କାନ୍ଦିବାକୁ ଲାଗିଲା । ତାହା ଦେଖି ଶୈଳଜା କହିଲା: ସେ କ'ଣ ନାନି ! କାନ୍ଦୁଚ ? ତୁମ୍ଭର କଅଣ ବଡ କଷ୍ଟ ହେଉଛି ?"

ଲକ୍ଷ୍ମୀ କାନ୍ଦି କାନ୍ଦି ଅତି କଷ୍ଟରେ କହିଲା, "ବହୂ, ମୁଁ କେଉଁ ମୁହଁରେ ତୁମ୍ଭ ସଙ୍ଗରେ କଥା କହିବି ? ତୁମ୍ଭେ ଦେବୀ, ମୁଁ ରାକ୍ଷସୀ । ମୋର ପାପର ପ୍ରାୟଶ୍ଚିତ୍ତ ହେଉଛି, କାହିଁକି ତୁମ୍ଭେ ମତେ ଏତେ ଯତ୍ନ କରୁଚ ? ମତେ ମାରି ପକାଅ । ମୋଠାରୁ ତୁମ୍ଭେ ଅନେକ ଯନ୍ତ୍ରଣା ପାଇଛ, ଆଜି ତା'ର ପ୍ରତିଶୋଧ ନିଅ । ମୁଁ ମହାପାତକିନୀ ! ମୋ ଦ୍ୱାରା ଏହି ସୁନାର ସଂସାର ଛାରଖାର ହୋଇ ଯାଇଛି । ମୁଁ ତୁମ୍ଭପରି ସତୀର ଚରିତ୍ରରେ କଳଙ୍କ ରଟାଇଛି ।" ଶୈଳଜା ଲକ୍ଷ୍ମୀର କଥାରେ ବାଧାଦେଇ କହିଲା, "ଛି ନାନି ! ସେସବୁ କଥା ମନେ କରି ଯୋଗାଏ ? ତୁମ୍ଭମାନଙ୍କର ଏତେ ବେଳ ଯାଏଁ ଖାଇବାର ହୋଇନାହିଁ ନା ?"

ଲକ୍ଷ୍ମୀ - ମୋର ଭାତ ଲୁଗାର କପାଳ ଉଠିଯାଇଛି; ଆଜି ଦୁଇଦିନ ହେଲା ପେଟରେ ଅନ୍ନ ନାହିଁ, ଏବେ ଜୀବନଟି ଗଲେ ହିଁ ବଞ୍ଚେ ।

ଶୈଳଜା ଇଚ୍ଛା କରିଥିଲା ଯେ ସ୍ୱାମୀଙ୍କର କଥା ଥରେ ପଚାରିବ, କିନ୍ତୁ ସାହସ ହେଲା ନାହିଁ । ଭୟ ହେଲା, ପରେ କେ ଜାଣି କଣ ଖବର ଶୁଣିବାକୁ ପାଇବ ।

ଶୈଳଜା ଟିକିଏ ଭାବି ଉଠିଗଲା । ବାପଘରୁ କିଛି ଖାଇବାର ଆଣିଥିଲା । ତହିଁରୁ କିଛି କିଛି ସମସ୍ତଙ୍କୁ ଖାଇବାକୁ ଦେଲା । ସଙ୍ଗରେ ଯେଉଁ ଚାକର ଆସିଥିଲା ତାକୁ ବଜାର କରିବାକୁ ପଠାଇଲା । ଶୈଳଜାର ମାତା ଆସିବା ସମୟରେ କିଛି ଟଙ୍କା ଦେଇଥିଲେ ସେଥିରେ ସେ ଚାଉଳ, ଡାଲି ଅଣାଇ ଧଡପଡ କରି ରାନ୍ଧିବାକୁ ବସିଲା । ଶୈଳଜା ଆସିଛି, ସମ୍ବାଦ ବିମଳା ଦୌଡି ଆସିଲା ଏବଂ ଦେଖିଲା ଶୈଳଜା ରାନ୍ଧିବାରେ ବ୍ୟସ୍ତ ଅଛି । ଦେଖି କହିଲା, 'କଣ ଭାଇ ! ବାପ ଘରେ ଦାସୀଗିରି ମିଳୁ ନ ଥିଲା, ସେଥିପାଇଁ ଆସିଲାକ୍ଷଣି କାମରେ ବ୍ୟସ୍ତ ।"

ଅନେକ ଦିନ ପରେ ଦେଖା ଶୁଣା: ଦୁଇ ଜଣ ମିଳି ନାନା କଥା ହେଲେ । ବିମଳା ପାଖରୁ ଶୈଳଜା ସ୍ୱାମୀଙ୍କ ସମ୍ବାଦ ଶୁଣିଲା, ସେଥିରେ ଶୈଳଜାର ମୁଣ୍ଡରେ ଶତ-ବଜ୍ରପାତ ହେଲା । ନଟବର ଦେଣା ବିପଦରେ ସର୍ବସ୍ୱାନ୍ତ ହୋଇଛନ୍ତି । କଳାସିଂହାର କପିଳେଶ୍ୱର ପଣ୍ଡାଙ୍କ ପାଖରୁ ନଟବର ତିନି ହଜାର ଟଙ୍କା କର୍ଜ କରିଥିଲେ । ପଣ୍ଡା ମହାଶୟ ବଡ ଭଦ୍ରଲୋକ: ଅନେକ ଦିନ ନଟବରଙ୍କ ମୁହ ଚାହିଁ ରହିଲେ । ସମସ୍ତ ସୁଧ ଛାଡି ଦେଇ ଅସଲ ଟଙ୍କାମାତ୍ର ମାଗିଲେ, ନଟବର ସେତକ ଦେବାକୁ ସମର୍ଥ ହେଲେ ନାହିଁ । ତାପରେ ଅନ୍ୟାନ୍ୟ ମହାଜନ ମାନେ ନାଲିସ କରି ତାଙ୍କର ବିଷୟ ସମ୍ପତ୍ତି ନିଲାମ କରି ନେବାକୁ ଲାଗିଲେ । ପଣ୍ଡା ମହାଶୟ ମଧ ଅଗତ୍ୟା ନାଲିସ କଲେ । ଅଦାଲତରୁ ସେ ଡିଗ୍ରୀ ପାଇଲେ, ଏବଂ ନଟବରଙ୍କ ବସତି ଘର କୋରକ କଲେ । ନଟବରଙ୍କ ସେଥିରେ ବଡ ରାଗ ହେଲା । କପିଳେଶ୍ୱର ପଣ୍ଡା ତାଙ୍କ ଘର କ୍ରୋକ୍ କରିବାକୁ ଆସିଲା ବେଳକୁ ସେ ତାଙ୍କର ଲୋକବାକ, ଏପରିକି ପୋଲିସ ପର୍ଯ୍ୟନ୍ତ ମାରି ବାହାର କରି ଦେଲେ, ସେହି ଅପରାଧରେ ପୋଲିସ ତାହାଙ୍କୁ ଧରି ନେଇ ଜେଲ ଦେଇଛି । ଏବେ ସୁଦ୍ଧା ମକଦ୍ଦମା ଚୂଡାନ୍ତ ହୋଇ ନାହିଁ । ଲୋକେ କହୁଛନ୍ତି ଅନ୍ତତଃ ଦୁଇ ବର୍ଷ ଜେଲ ହେବ ।

ଶୁଣି ଶୈଳଜା ଦଶଦିଗ ଅନ୍ଧକାର ଦେଖିବାକୁ ଲାଗିଲା । ଅତି କଷ୍ଟରେ କାନ୍ଦି କାନ୍ଦି ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରି ଭ୍ରାତା ଓ ଶାଶୁ, ନଣନ୍ଦଙ୍କୁ ଖୁଆଇଲା । ନିଜେ ଜଳବିନ୍ଦୁ ସୁଦ୍ଧା ଗ୍ରହଣ କଲା ନାହିଁ ।



# ଏକାଦଶ ପରିଚ୍ଛେଦ

"ପ୍ରାଣ ଦେଲେ ସୁଖୀ ଯଦି ହୁଅନ୍ତି ଲୋ ପତି, ପରମ ଆହ୍ଲାଦେ ପ୍ରାଣ ଦେଇ ପାରେ ସତୀ ।"

ରାତିଯାକ ଶୈଳଜାର ନିଦ୍ରା ଆସିଲା ନାହିଁ । ଚକ୍ଷୁର ଧାରରେ ଶଯ୍ୟା ଭିଜିଗଲା । "ହାୟ ! ବିଧାତା ମୋର ଅଦୃଷ୍ଟରେ କେତେ ଦୁଃଖ ଲେଖିଥିଲେ ! ପୂର୍ବ ଜନ୍ମରେ କେଜାଣି ମୁଁ କି ମହାପାପ କରିଥିଲି ! ମୋର ଏପରି ଅତୁଳ ଐଶ୍ୱର୍ଯ୍ୟ, ଏପରି ଦେବତୁଲ୍ୟ ସ୍ୱାମୀ ଥାଉଁ ଥାଉଁ ମୁଁ ସୁଖୀ ହୋଇ ପାରିଲି ନାହିଁ । କେଜାଣି ସ୍ୱାମୀଙ୍କର କେତେ କେତେ କଷ୍ଟ ହେଉଥିବ ! କାରାଗାରରେ ପ୍ରହରୀଗଣ କେ ଜାଣି ତାହାକୁ କେତେ ପୀଡନ କରୁଥିବେ । ତାଙ୍କର ଶରୀରରେ ପରିଶ୍ରମ ସହେ ନାହିଁ । କିପରି ସେ କାରାଗାରରେ ପରିଶ୍ରମ କରୁଛନ୍ତି ! ତାଙ୍କର ଉଦ୍ଧାରର କଣ କୌଣସି ଉପାୟ ନାହିଁ ? ପରମେଶ୍ୱର କଣ ଏହି ହତଭାଗିନୀର ପ୍ରତି କୃପା କରିବେ ନାହିଁ ? ମୋର ଚାରିହଜାର ଟଙ୍କା ଅଛି, ମାତା, ପିତା ମୋତେ ଦୁଇଶହ ଟଙ୍କାର ଅଳଙ୍କାର ଦେଇଛନ୍ତି । ଏହା ଦେଲେ ଯଦି ତା'ଙ୍କର ନିଷ୍କୃତି ହୁଏ, ମୁଁ ସେଥିରେ ମଧ୍ୟ କୁଣ୍ଠିତା ନୁହେଁ । ପରମେଶ୍ୱର ! ମୋର ଜୀବନ ନିଅ, ମୋର ସ୍ୱାମୀଙ୍କୁ ଉଦ୍ଧାର କର ।"

ଭାବି ଭାବି ରାତ୍ରି ପ୍ରଭାତ ହେଲା । ଅତି ପ୍ରତ୍ୟୁଷରେ ଶୈଳଜା ଶଯ୍ୟା ତ୍ୟାଗ କଲା । ସକାଳୁ ଗୃହକର୍ମ ସାରି ଅନ୍ନ ବ୍ୟଞ୍ଜନ ପ୍ରସ୍ତୁତ କରି ସମସ୍ତଙ୍କୁ ଖୁଆଇଲା, ତା'ପରେ କୋହ୍ଲୁ ଡକାଇ ପାଲିଙ୍କି ଅଣାଇଲା । ବିମଳାକୁ ଡାକି ସେହି ନୋଟିଗୁଡ଼ିକ ମାଗିଲା । ବିମଳା ପ୍ରଥମରେ ନୋଟଗୁଡ଼ିକ ଦେବାକୁ ଅସ୍ୱୀକାର କରୁଥିଲା । କହିଲା; "ଏହି ଟଙ୍କା ଗୁଡ଼ିକ ବ୍ୟୟ କରି କଣ ହେବ ? ଥିଲେ ପରିଣାମରେ ତୋର ଅନ୍ନବସ୍ତ୍ର ଚଳି ପାରିବ ।" ଶୈଳଜା କାହିଁରେ ହିଁ ଶୁଣିଲା ନାହିଁ; କଣ କରିବ ତହା ମଧ୍ୟ କହିଲା ନାହିଁ; କେବଳ କହିଲା - "ମୋର ଟଙ୍କା ଦରକାର, ତୁ ଦେ ।" ଅଗତ୍ୟା ବିମଳା ନୋଟଗୁଡ଼ିକ ଆଣି ଦେଲା ।

ଚାରିହଜାର ଟଙ୍କାର ନୋଟ ଓ ନିଜର ଅଳଙ୍କାରଗୁଡ଼ିକ ଏକତ୍ର କରି ଗୋଟାଏ ଡବାରେ ନେଇ ଶୈଳଜା ପାଲିଙ୍କିରେ ଚଢ଼ି କପିଳେଶ୍ୱର ପଣ୍ଡାଙ୍କ ଘରକୁ ଯାତ୍ରା କଲା । ଖିଡିକି ଦରଜା ଦେଇ ଶୈଳଜା ପ୍ରଥମରେ ପଣ୍ଡା ମହାଶୟଙ୍କର ଅନ୍ତଃପୁରରେ ପ୍ରବେଶ କଲା । ସେଠାରେ କେତେଜଣ ସ୍ତ୍ରୀ ଲୋକ ରନ୍ଧାବଢ଼ା କରୁଥିଲେ; କେହି ତାକୁ ଚିହ୍ନି ପାରିଲେ ନାହିଁ । ଘର କୋଣର ବହୂ, କେବେ ହଁ ଗୃହରୁ ବାହାର ହୋଇ ନାହିଁ । ଦିନେ ମଧ୍ୟ ଦେଖା ସାକ୍ଷାତ ହୋଇ ନାହିଁ, ଚିହ୍ନିବେ କିପରି ? କେଉଁଠାରୁ କା'ର ଗୋଟିଏ

ସୁନ୍ଦରୀ ବହୂ ଆସଲା ଦେଖି, ସେମାନେ ବିସ୍ମିତ ହେଲେ ।

ଶୈଳଜା ମଧ୍ୟ କଥା କହିଲା ନାହିଁ । କଣ କହିବ, କିଛି ବୁଝି ପାରିଲା ନାହିଁ । ଓଢ଼ଣାରେ ମୁହଁ ଢ଼ାଙ୍କି ଗୋଟିଏ ପାଖରେ ଛିଡା ହୋଇ ରହିଲା । ସେତେବେଳେ ତାର ସର୍ବ ଶରୀର କମ୍ପୁଥିଲା । ଆଖି ଦେଇ ଲୁହ ଗଡି ଯାଉଥିଲା ।

କିଛିକ୍ଷଣ ପରେ ଜଣେ ପୌଢ଼ ସ୍ତ୍ରୀ କହିଲେ, "କିଏ ତୁଇଁ ଧନ ? ତତେ ତ ଆମ୍ଭେ ଚିହ୍ନିପାରୁ ନାହୁଁ ।" ଅପର ଦିଗରୁ ଗୋଟାଏ ବହୂ କହିଲା, "ଦେଖ ମାଁ, ବହୂଟି ଯେପରି କାନ୍ଦୁଛି, ଚକ୍ଷୁର ଜଳରେ ମାଟି ଭିଜିଯାଉଛି ।" କଥାବାର୍ତ୍ତାରୁ ଶୈଳଜା ବୁଝିପାରିଲା ଯେ ପ୍ରଥମରେ ତାର ସଙ୍ଗରେ କଥା କହିଲେ, ସେ କପିଳେଶ୍ୱର ପଣ୍ଡା ମହାଶୟଙ୍କ ପତ୍ନୀ । ଶୈଳଜା ଧୀରେ ଧୀରେ ତାଙ୍କ ପାଦ ପାଖରେ ସେହି ଅଳଙ୍କାର ଓ ନୋଟଗୁଡ଼ିକ ରଖି, ମୁହଁରୁ ବାକ୍ୟ ଫିଟିଲା ନାହିଁ, ଅଧିକତର ପ୍ରବଳ ବେଗରେ ଅଶ୍ରୁବର୍ଷଣ କରିବାକୁ ଲାଗିଲା । ସମସ୍ତେ ବିସ୍ମିତ ହେଲେ । ଶୈଳଜାର ଅବସ୍ଥା ଦେଖି ପଣ୍ଡା ମହାଶୟଙ୍କର ପତ୍ନୀର ବିଶେଷ ଦୁଃଖ ହେଲା । ସେ ଅତି ସ୍ନେହରେ କହିଲେ, "କିଏ ମାଁ ତୁହିଁ ? କାହିଁକି ତୁ ଇମିତି ଭାବରେ କାନ୍ଦୁଛୁ ? ତୁ କଣ ଚାହୁଁ, ନିର୍ଭୟରେ କହ !"

ଶୈଳଜା ଚକ୍ଷୁ ପୋଛି କହିଲା, "ଆପଣ ମୋର ଧର୍ମ୍ମର ମା, ମୁଁ ଆପଣଙ୍କର କନ୍ୟା । ମୋ ଉପରେ ଦୟା କରିବାକୁ ହେବ, ମତେ ଉଦ୍ଧାର କରିବାକୁ ହେବ । ଆପଣଙ୍କ ଭିନ୍ନ ମତେ ଏହି ବିପଦରୁ କେହି ରକ୍ଷା କରିପାରିବେ ନାହିଁ ।" ଏତିକି କହି ଶୈଳଜା ବ୍ରାହ୍ମଣୀର ପାଦତଳେ ଲୋଟି ପଡିଲା ।

ତା ପରେ ଶୈଳଜା ଗୋଟି ଗୋଟି କରି ସମସ୍ତ ପରିଚୟ ଦେଲା । ସେହି ଚାରିହଜାର ଟଙ୍କାର ନୋଟ ଏବଂ ସେହି କେତେ ଖଣ୍ଡି ଅଳଙ୍କାର ନେଇ ଯହିଁରେ ପଣ୍ଡା ମହାଶୟ ତାର ସ୍ୱାମୀଙ୍କୁ ନିଷ୍କୃତି ଦିଅନ୍ତି, ସେଥିପାଇଁ ତାଙ୍କ ପତ୍ନୀଙ୍କ ପାଖରେ ବହୁତ ଅନୁନୟ କଲା । ସେହି ଟଙ୍କାରୁ ଋଣର ଯାହା ବାକୀ ରହିବ, ସେ ତାଙ୍କ ଘରେ ଦାସୀ ଖଟି ପରିଶୋଧ କରିବ; ଚିରଜୀବନ ତାହାଙ୍କଠାରେ ବନ୍ଧା ରହିବ ।

ପଣ୍ଡା ଘରର ସମସ୍ତେ ଆଗରୁ ଶୁଣିଥିଲେ, ନଟବର ସାମନ୍ତଙ୍କ ସ୍ତ୍ରୀଟି ସ୍ୱୟଂ ଲକ୍ଷ୍ମୀ । ତାର ଶାଶୁ ନଣନ୍ଦ ବଡ ଦୁଃଷ୍ଟା, ସର୍ବଦା ବହୂକୁ ଜ୍ୱାଳା ଯନ୍ତ୍ରଣା ଦିଅନ୍ତି । ନଟବର ମଧ୍ୟ ନିତାନ୍ତ ପାଷଣ୍ଡ; ଏପରି ସୁନା ବହୂକୁ କଠିଣ ପ୍ରହାରରେ ମରଣାପନ୍ନ କରି ବାପ ଘରକୁ ପଠାଇ ଦେଇଛି । ଶୈଳଜାର ଗୁଣର କଥା ଯେପରି ଶୁଣିଥିଲେ, ଆଜି କାର୍ଯ୍ୟତଃ ସମସ୍ତେ ତାହା ଦେଖିବାକୁ ପାଇଲେ । ଏପରି ପାଷଣ୍ଡ ସ୍ୱାମୀର ଉଦ୍ଧାର ପାଇଁ କି ସେ

ଯଥାସର୍ବସ୍ୱ ଏପରି  କି ଦେହର ଅଳଙ୍କାର ପର୍ଯ୍ୟନ୍ତ ଦେବାକୁ ପ୍ରସ୍ତୁତ ହୋଇଛି ଏବଂ କୋଣରେ ବହୂ ହୋଇ ଲଜ୍ଜା ସମ୍ଭ୍ରମ ତ୍ୟାଗ କରି ଏତେ ଦୂର ଆସି ଶତ୍ରୁର ପାଦ ଧରି କାନ୍ଦୁଛି ଦେଖି, ସମସ୍ତେ ଶୈଳଜା ପ୍ରତି ସହାନୁଭୂତି ପ୍ରକାଶ କଲେ ।

ଶୈଳଜାର ମୁହଁ ଖଣ୍ଡିକ ଶୁଷ୍କ, ଚକ୍ଷୁ ଦୁଇଟି ପଶି ଯାଇଛି ଦେଖି କପିଳେଶ୍ୱର ପଣ୍ଡାଙ୍କ ପତ୍ନୀ ବୁଝିଲେ ଏ କେବଠୁଁ ଖାଇ ନାହିଁ ।  ବ୍ରାହ୍ମଣୀ ସସ୍ନେହରେ କହିଲେ, "ମା ! ବୋଧହୁଏ ତୁ ଖାଇ ନାହୁଁ ।  ଏବେ ଦୁଇଟି ଖିଆପିଆ କର, ତା ପରେ ସବୁ କଥା ବୁଝିବା ।

ଶୈଳଜା - ମା ! ଯା'ର ସ୍ୱାମୀଙ୍କର ଏହିପରି ଦୁର୍ଦ୍ଦଶା, ତା'ର କଣ ପୁଣି ପେଟରେ ଅନ୍ନ ଦେଇ ଯୋଗାଏ ?

ଏହି କଥା ଶୁଣି ବ୍ରାହ୍ମଣୀର କାନ୍ଦ ଆସିଲା ।  ସେ ଆଉ କୌଣସି କଥା ନ କହି, କର୍ତ୍ତାଙ୍କୁ ଯାଇ ସମସ୍ତ କହିଲେ ।

ପଣ୍ଡା ମହାଶୟ ସମସ୍ତ ଶୁଣି ଶୈଳଜାକୁ ଦେଖିବାକୁ ଆସିଲେ ।  ଶୈଳଜା ତାହାଙ୍କୁ ଦେଖି ଲଜ୍ଜାରେ ଓଢ଼ଣା ଟାଣିଦେଲା ।  ଗୃହିଣୀ କହିଲେ, ତାଙ୍କୁ ଲଜ୍ଜା କଣ ? ତୁ ଯେ ଆମ୍ଭର ଝିଅ ।"

ଶୈଳଜା ପଣ୍ଡା ମହାଶୟଙ୍କ ସମ୍ମୁଖରେ ଭୂମିଷ୍ଠ ହୋଇ ପ୍ରଣାମ କଲା । କପିଳେଶ୍ୱର ପଣ୍ଡା ମହାଶୟ ବଡ ସଦାଶୟ ଲୋକ, ସମସ୍ତ ଦେଖି ଶୁଣି ତାଙ୍କର ବଡ଼ ଦୟା ହେଲା ।  ସେ କହିଲେ, "ନଟବର ସାମନ୍ତ ମୋର ପରମ ଶତ୍ରୁ; ସେ ମୋର ପାଞ୍ଚ ହଜାର ଟଙ୍କା ନଷ୍ଟ କରିଛି, ଅଧିକନ୍ତୁ ମତେ ଗୁରୁତର ଅପମାନିତ କରିଛି ।  କିନ୍ତୁ ମା ତୁ ସ୍ୱୟଂ ଲକ୍ଷ୍ମୀ ।  ତୋର ଅନୁରୋଧରେ ତାକୁ କ୍ଷମା କଲି ।  ଉଦ୍ଧାର କରିବାକୁ ମୁଁ ସାଧ ମତେ ଚେଷ୍ଟା କରିବି; କିନ୍ତୁ କେତେ ଦୂର କୃତକାର୍ଯ୍ୟ ହେବି, କହି ନ ପାରେ; କାରଣ ସେ ପୋଲିସକୁ ଅପମାନ ଦେଇଛି, ପୋଲିସ ତାର ବିରୋଧୀ ।  ତୋର ଅଳଂକାରଗୁଡିକ ତୁ ନେଇ ଯା', ମୁଁ ଏପରି ପାଷାଣ୍ଡ ନୁହେଁ ଯେ ଏପରି ସାଧ୍ୱୀର ଅଙ୍ଗର ଅଳଂକାର ଖୋଲି ରଖିବି ।  ଟଂକାଗୁଡିକ ମୋ ପାଖରେ ଥାଉ ।  ଯଦି ତୋର ସ୍ୱାମୀର ଉଦ୍ଧାର କରିପାରେ, ତେବେ ଟଂକା ନେବି, ନୋହିଲେ ତୋର ଟଙ୍କା ତୁ ଫେରସ୍ତ ପାଇବୁ ।  କୃକକାର୍ଯ୍ୟ ହେବାର ସମ୍ଭାବନା ଅଛି, କାରଣ ତୋ ପରି ସ୍ୱାଧ୍ୱୀ ପ୍ରତି ଈଶ୍ୱର ସର୍ବଦା ହିଁ  ଅନୁକୂଳ ।"

ପଣ୍ଡା ମହାଶୟଙ୍କର କଥା ଶୁଣି ଶୈଳଜା ଆଶ୍ୱସ୍ତ ହେଲା ।  ସେତେବେଳେ ସମସ୍ତେ ତାକୁ ଖାଇବା ପାଇଁ ଅନୁରୋଧ କରିବାକୁ ଲାଗିଲେ ।  ସମସ୍ତଙ୍କର ଅନୁରୋଧ

ଏଡି ଦେଇ ନ ପାରି ଶୈଳଜା ଏହି ଦୁଇଦିନ ପରେ ସେ ସ୍ଥାନରେ ଚାରୋଟି ଅନ୍ନ ଗ୍ରହଣ କଲା । ଆସିବା ସମୟରେ ଗୃହିଣୀ ତାହାକୁ ଖଣ୍ଡିଏ ନୂଆ ବସ୍ତ୍ର ଦେଇ କହିଲେ, "ଆଜିଠାରୁ ତୁ ମୋର ଧର୍ମ ଝିଅ ହେଲୁ । ଈଶ୍ୱର ତୋର ମଙ୍ଗଳ କରିବେ । ତୋ ପରି ସୁନା ମୁଁ ଦେଖି ନ ଥିଲି ।

ଯା'ର ଗୁଣ ଥାଏ, ଶତ୍ରୁ ମଧ୍ୟ ତା'ର ଆପଣାର ହୁଏ ।



# ଦ୍ୱାଦଶ ପରିଚ୍ଛେଦ

"ସତୀର ଉପରେ ସଦା ଈଶ୍ୱର ସଦୟ,

ସତୀ ଯେ ରମଣୀ ତା'ର ସର୍ବ ସ୍ଥଳେ ଜୟ ।"

ସପ୍ତାହେ ଅତୀତ ହେଲା, ଏବେ ସୁଦ୍ଧା ନଟବରଙ୍କ ମକଦ୍ଦମାର ଚୂଡାନ୍ତ ହେଲା ନାହିଁ । ଶୈଳଜାର ଚିନ୍ତାର ପାର ନାହିଁ । ଏତେକାଳ ପରେ ଶାଶୁ ନଣନ୍ଦଂକ ସ୍ନେହ ପାଇଛି । ଏତେ ଦିନ ସେ ଶାଶୁ ନଣନ୍ଦଂକ ଚକ୍ଷୁର ବିଷ ଥିଲା, ଏକ୍ଷଣି ସେ ସେମାନଂକର ନୟନର ମଣି ହୋଇଛି । ଏତେ କାଳ ପରେ ସେ ଶାଶୁ ଘରରେ ଆପଣା ଘର ପରି ନିଃସଂକୋଚରେ ରହିବାକୁ ପାଇଛି: କିନ୍ତୁ ଶୈଳଜାର ଅନ୍ତରର ସୁଖ ନାହିଁ । ସୁଖ ହେବ କାହିଁରେ ? ପତି ହିଁ ସତୀର ଏକମାତ୍ର ସୁଖର ନିଦାନ । ସେହି ପତି ଯେତେବେଳେ କାରାଗାରରେ କଷ୍ଟ ପାଉଛନ୍ତି, ସେତେବେଳେ ସ୍ୱର୍ଗକୁ ଗଲେ ମଧ୍ୟ ସତୀ ସୁଖୀ ହୋଇ ପାରେ ନାହିଁ । ଶୈଳଜାର ସର୍ବଦା ହିଁ ଚିନ୍ତା, ସ୍ୱାମୀଙ୍କର କେଜାଣି କଣ ହେବ । ସର୍ବଦା ସେ କାୟମନ ବାକ୍ୟରେ ଈଶ୍ୱରଙ୍କୁ ଡାକୁଛି ।

କିନ୍ତୁ ଏତେ ଚିନ୍ତାରେ ଏତେ ଅସୁଖରେ ଶୈଳଜାର କର୍ତ୍ତବ୍ୟ କର୍ମବିସ୍ମୃତ ହୋଇ ନାହିଁ । ସେ ବୁଝିଥିଲା, ତାର ବୃଦ୍ଧା ଶାଶୁ ଓ ପୀଡିତ ନଣନ୍ଦଙ୍କର ସେ ଏକମାତ୍ର ଆଶ୍ରୟ । ପ୍ରାଣ ପଣେ ଶୈଳଜା ସେମାନଙ୍କର ସେବା ଶୁଶ୍ରୁଷା କରୁଛି । ନିଜର ଅଳଙ୍କାର ବନ୍ଧକ ଦେଇ ଟଙ୍କା ଆଣି ଭଲ ବୈଦ୍ୟଦ୍ୱାରା ଲକ୍ଷ୍ମୀର ଚିକିତ୍ସା କରାଉଛି । ତାର ପୀଡା କମିଛି, ସେ ଏବେ ଉଠିବସି ପାରୁଛି ।

ଆଜି ନଟବରଙ୍କର ମକଦ୍ଦମାର ତାରିଖ, ଆଜି ଯାହା କିଛି ଗୋଟାଏ ହୋଇଯିବ । ଦିନସାରା ଶୈଳଜା ବାଟ ଆଡକୁ ଚାହିଁ ରହିଲା: ଭଲ ମନ୍ଦ କୌଣସି ଖବର ପାଉନାହିଁ । ରାତି ହେଲା, ତଥାପି କୌଣସି ଖବର ଆସିଲା ନାହିଁ । ରାତି ସାରା ଶୈଳଜାର ନିଦ୍ରା ହେଲାନାହିଁ । ଭାବି ଭାବି ଶେଷ ରାତ୍ରିରେ ତାର ତନ୍ଦ୍ରା ଆସିଲା । ତନ୍ଦ୍ରା ଆବେଶରେ ଶୈଳଜା ସ୍ୱପ୍ନ ଦେଖିଏ ଯେମିତି ତାର ସ୍ୱାମୀ ଆସି ତା'ର ଶଯ୍ୟାରେ ବସିଛନ୍ତି । ତାକୁ କେତେ ମଧୁର ସମ୍ଭାଷଣ କରୁଛନ୍ତି; ସେ ଯିମିତି ପାଦରେ ପଡି କାନ୍ଦୁଛି । ତାର ତନ୍ଦ୍ରା ଭାଙ୍ଗିଗଲା, ଆଖି ମେଲାଇ ଦେଖିଲା ପ୍ରଭାତ ହୋଇଛି, ପୂର୍ବ ଦିଗର ମୁକ୍ତ ଗବାକ୍ଷ ଦେଇ ଗୋଲାପୀ ରଙ୍ଗର ମୃଦୁ ସୂର୍ଯ୍ୟ ରଶ୍ମି ଘର ଭିତରେ ପ୍ରବେଶ କରୁଛି । ମଧ୍ୟରେ ମଧ୍ୟରେ ରହି ରହି ଗୋଟାଏ ଦୁଇଟା ପକ୍ଷୀ ଡାକି ଉଠୁଛନ୍ତି । ଅତି ଧୀରେ ଧୀରେ ସୁସ୍ନିଗ୍ଧ ପ୍ରଭାତ ବାୟୁ ବହୁଛି । ଦୁର୍ଗାଙ୍କ ନାମ ସ୍ମରଣ କରି ଶୈଳଜା

ଶଯ୍ୟା ତ୍ୟାଗ କରି ଉଠିଲା । ଧୀରେ ଧୀରେ ଦ୍ୱାର ଖୋଲି ବାହାରକୁ ଗଲା । ବାହାରକୁ ଯାଇ ଦେଖିଲା । ସେଥିରେ ତାର ଅସୀମ ଆନନ୍ଦ ଅଥଚ ଅସୀମ ଦୁଃଖ ହେଲା । ଆନନ୍ଦ ହେଲା - କାହିଁକି ନା ଦେଖି ପାରିଲା, ନଟବର ଘର ପିଣ୍ଡାରେ ବସିଅଛନ୍ତି । ଦୁଃଖ ହେଲା - କାହିଁକିନା, ତାଂକ ସର୍ବଶରୀର ଅତିଶୟ ଶୀର୍ଣ୍ଣ ଓ ବିବର୍ଣ୍ଣ; ଚକ୍ଷୁଦୁଇଟି ପଶିଯାଇଛି; ପରିଧାନ ଅତି ମଳିନ ବସନ । ସେ ବସିବା ଅବସ୍ଥାରେ ଶୋଇ ପଡିଛନ୍ତି; ବୋଧହୁଏ ସମସ୍ତ ରାତ୍ରି ବସି ବସି କଟାଇଛନ୍ତି । କିଛିକ୍ଷଣ ଶୈଳଜା ଆତ୍ମହରା ପରି ଛିଡା ହୋଇ ରହିଲା । ଭକ୍ତି ବିଗଳିତ ଚିତ୍ତରେ ଈଶ୍ୱରଙ୍କୁ ଡାକି କହିଲା, "ହେ ଜଗଦୀଶ୍ୱର ! ତୁମ୍ଭେ ଅଗତିର ଗତି; ଦୟାମୟ ! ଅଭାଗିନୀ ପ୍ରତି ଅସୀମ କରୁଣା ପ୍ରକାଶ କରି ଦୟାସାଗର ନାମ ସାର୍ଥକ କରିଛ । ଆହୁରି କୃପା କର, ମୋର ସ୍ୱାମୀଙ୍କର ମଙ୍ଗଳ କର; ଏବେ ସୁଦ୍ଧା ତାହାଙ୍କୁ ସୁମତି ଦିଅ ।

ଶୈଳଜା ଧୀରେ ଧୀରେ ସ୍ୱାମୀଙ୍କ ପାଖକୁ ଅଗ୍ରସର ହେଲା । ନଟବର ପତ୍ନୀକୁ ଦେଖିବା ମାତ୍ରକେ ବଡ ବ୍ୟସ୍ତ ଭାବରେ ତାର ହାତ ଧରି କାନ୍ଦି କାନ୍ଦି କହିଲେ, "ଶୈଳଜା ତୁ ଦେବୀ; ମୁଁ ତୋର ପାଷାଣ୍ଡ ସ୍ୱାମୀ, ପଶୁ ଅପେକ୍ଷା ମଧ୍ୟ ଅଧମ । ମୁଁ ତୋର ପରମ ଦ୍ରୋହୀ । ମୁଁ କାରାଗାରରେ ପାପର ଫଳ ଭୋଗ କରୁଥିଲି, କାହିଁକି ତୁ ମୋତେ ଉଦ୍ଧାର କଲୁ ? ମୋ ପରି ପାଷଣ୍ଡର କାରାଗାର ହିଁ ଯୋଗ୍ୟ ସ୍ଥାନ ।" ବିଷମ ଅନୁତାପରେ ନଟବରଙ୍କ ହୃଦୟ ଜର୍ଜରିତ ହେଉଥିଲା । ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା; ଆଉ କଥା କହି ପାରିଲେ ନାହିଁ । ବାଳକ ପରି କାନ୍ଦିବାକୁ ଲାଗିଲେ ।

ଶୈଳଜା ମଧ୍ୟ କାନ୍ଦିଲା; କୌଣସି କଥା କହି ପାରିଲା ନାହିଁ; ସ୍ୱାମୀଙ୍କ ହାତ ଧରି ଘର ଭିତରକୁ ନେଇଗଲା । ନଟବରଙ୍କ ମାତା କାନ୍ଦି କାନ୍ଦି ଆସିଲେ; ଲକ୍ଷ୍ମୀ ମଧ୍ୟ ଅତି କଷ୍ଟରେ ଆସିଲା; ଶୈଳଜା ଧଡପଡ କରି ସ୍ୱାମୀଙ୍କୁ ତେଲ, ପାଣି ଓ ଖଣ୍ଡିଏ ପରିଷ୍କାର କପଡା ଆଣି ଦେଲା । ତା'ପରେ ଧଡପଡ କରି ନିଜେ ଗାଧୋଇ ଆସିଲା । ନଟବର ଆସିବେ, ଏହି ଆଶାରେ ଶୈଳଜା ପୂର୍ବ ଦିନରୁ କିଛି ଜଳଖିଆ ତିଆରି କରି ରଖିଥିଲା । ଆଣି ଖାଇବାକୁ ଦେଲା । ନଟବର କିଛି ଖାଇ ପାରିଲା ନାହିଁ; ଅନୁତାପରେ ତାହାଂକର ହୃଦୟ ଫାଟି ଯାଉଥିଲା । ଯେଉଁ ସରଳା ବାଳିକାକୁ ସେ ନିରପରାଧରେ ସହସ୍ର ଯନ୍ତ୍ରଣା ଦେଇଛନ୍ତି, ନିତାନ୍ତ ନୃଶଂସ ପରି ଯାହାକୁ କଠିନ ପଦାଘାତରେ ମୁମୂର୍ଷୁ କରିଥିଲେ, ଆଜି ତାହାରି ମହିମା ଗୁଣରେ ସେ କଠୋର କାରାଗାର ଯନ୍ତ୍ରଣାରୁ ନିଷ୍କୃତି ପାଇଛନ୍ତି । ନଟବର କରାଗାରରୁ ମୁକ୍ତ ହେଲାରୁ କପିଳେଶ୍ୱର ପଣ୍ଡା କହିଥିଲେ, 'ନଟବର ତୁ ଯେଉଁପରି ପାଷଣ୍ଡ, ତୋ ପ୍ରତି ଦୟା କରିବାର ନୁହେଁ ! କେବଳ ତୁ ତୋର ସାଧ୍ୱୀ ପତ୍ନୀର ସତୀତ୍ୱ-

ବଳରେ ଉଦ୍ଧାର ପାଇଛୁ । ସେହି ବାଳିକା ଯଥା ସର୍ବସ୍ୱ ତ୍ୟାଗ କରି ତୋର ଉଦ୍ଧାର କରିଛି । ଏବେ ଯଦି ଭବିଷ୍ୟତରେ ମଙ୍ଗଳ ଚାହୁଁ, ତେବେ ଏବେ ସୁଦ୍ଧା ସାବଧାନ ହୁଅ, ଏବେ ସୁଦ୍ଧା ସେହି ଗୁଣବତୀ ଭାର୍ଯ୍ୟାର ଉପଦେଶରେ ଚାଲ ।"

ନଟବର ସବୁ ବୁଝିଛନ୍ତି; ହୃଦୟରେ ପୂର୍ବ-ସ୍ମୃତି ଜାଗରିତ ହେବାରୁ ତାଂକର ଅସୀମ ଯନ୍ତ୍ରଣା ହେଉଛି । ସେ ଅସହ୍ୟ ମାନସିକ ଦୁଃଖରେ କହିବାକୁ ଲାଗିଲେ, "ଶୈଳଜା ! ତୁ ଯଥାର୍ଥରେ ସତୀ । ସତୀ ସାବିତ୍ରୀଙ୍କ ଗୁଣରେ ମୃତ ପତି ପ୍ରାଣ ପାଇଥିଲା, ତୁ ମଧ୍ୟ ମୃତ ପତିକୁ ବଞ୍ଚାଇଲୁ । ଏତେ ଦିନ ମୁଁ ମରିଥିଲି; ଯା'ର ହିତାହିତ ଜ୍ଞାନ ନାହିଁ, ସେ ମୃତ ନୁହେଁ ତ କଅଣ ? ଆଜି ମୁଁ ଦିବ୍ୟଜ୍ଞାନ ପାଇଛି । ମୁଁ ଏପରି ସତୀ-ରମଣୀର ସ୍ୱାମୀ, ସେହି ବଳରେ ବୋଧହୁଏ ମନୁଷ୍ୟ ହୋଇ ପାରିବି ।"

ସ୍ୱାମୀଙ୍କର କରୁଣ ବାକ୍ୟରେ ଶୈଳଜାର ଅନ୍ତର ମଧ୍ୟ ଦ୍ରବୀଭୂତ ହେଲା, ସେ କହିଲା - 'ଛି ! ସେହି ସବୁ କଥା ଏବେ ରଖ, ମୋର ମୁଣ୍ଡ ଖାଇବ, ଏବେ ତୁମେ ଟିକିଏ ସୁସ୍ଥ ହୁଅ ।"

ଏହି ସମୟରେ କପିଳେଶ୍ୱର ପଣ୍ଡା ଆସି ଉପସ୍ଥିତ ହେଲେ । ଶୈଳଜା ଭୂମିଷ୍ଠ ହୋଇ ତାଙ୍କର ପାଦ ତଳେ ପ୍ରଣତ ହେଲା, ଅଶ୍ରୁ ବିଗଳିତ ହୋଇ ଅନ୍ତରର କୃତଜ୍ଞତା ଜଣାଇଲା । ପଣ୍ଡା ମହାଶୟ କେତେ ଖଣ୍ଡି ନୋଟ୍ ଶୈଳଜା ଆଗରେ ରଖି କହିଲେ, "ସୁନା ମାଆ ମୋର ! ମୋର ସତୀତ୍ୱ ବଳରେ ତୋର ସ୍ୱାମୀ ଉଦ୍ଧାର ପାଇଛି । ନୋହିଲେ ଟଙ୍କା ବଳରେ ଏହିପରି ପାପିଷ୍ଠର ପାପ ମୋଚନ ହୋଇ ପାରେ ନାହିଁ ! ତୋର ଟଙ୍କା ମଧ୍ୟରୁ ପୋଲିସକୁ ହଜାରେ ଟଙ୍କା ଲାଞ୍ଚ ଦେବାକୁ ହୋଇଛି, ବାକି ତିନି ହଜାର ଟଙ୍କା ମୁଁ ଦେଣାର ପରିଶୋଧ ପାଇଛି । ଟଙ୍କାର ସୁଧ ଓ ମକଦ୍ଦମାର ଖର୍ଚ୍ଚ ମୁଁ ନିଜେ ବହନ କଲି । ତୋର ସତୀତ୍ୱର ପୁରସ୍କାର ସ୍ୱରୂପ ଏହି ହଜାରେ ଟଙ୍କା ମୁଁ ତତେ ଦାନ କରୁଛି ।

ଶୈଳଜା ଟଙ୍କା ନେବାକୁ ଚାହିଁଲା ନାହିଁ, ସ୍ୱାମୀଙ୍କ ସାକ୍ଷାତରେ କୌଣସି କଥା ମଧ୍ୟ କହି ପାରିଲା ନାହିଁ । ଭଙ୍ଗୀରୁ ବୁଝିପାରି ନଟବର ସେହି ସ୍ଥାନରୁ ଉଠିଚାଲିଗଲେ । ସେତେବେଳେ ଶୈଳଜା କହିଲା, 'ଆପଣ ଯେଉଁ ଉପକାର କରିଛନ୍ତି, ତାହା ଜୀବନରେ କେବେହେଁ ପରିଶୋଧ କରି ପାରିବୁ ନାହିଁ । ଆମ୍ଭେମାନେ ଆପଣଂକର ପ୍ରାୟ ଛଅ, ସାତ ହଜାର ଟଙ୍କା ନଷ୍ଟ କରି ଆପଣଙ୍କୁ ଗୁରୁ ଅପମାନ ଦେଇଛୁ, ତାହାର ପରିବର୍ତ୍ତରେ ଆପଣ ଯେଉଁ ଉପକାର କରିଛନ୍ତି, ପ୍ରାଣ ଦେଲେ ମଧ୍ୟ ତାର ପରିଶୋଧ ହେବ ନାହିଁ ।

ଟଂକାରେ ମୋର ପ୍ରୟୋଜନ ନାହିଁ, କେବଳ ପାଦଧୂଳି ଦେଇ ଆଶୀର୍ବାଦ କରନ୍ତୁ ।

ପଣ୍ଡା - ମା, ସୁନା ମା ମୋର ! ମୁଁ ଜାଣେ, ଏବେ ତୁମ୍ଭେମାନେ କପର୍ଦ୍ଦକହୀନ, ତୁମ୍ଭର ଅନ୍ନର ସଂସ୍ଥାନ ନାହିଁ । ତୁ ମୋର କନ୍ୟା, ମୋର ଅର୍ଥ ଥାଉଁଣୁ ମୋର କନ୍ୟା ଅନାହାରରେ ମରିବ, ତାହା କଣ ସମ୍ଭବ ? ଯେତେ ବେଳେ ତୁ ମୋତେ ପିତା ବୋଲି ସମ୍ବୋଧନ କରିଛୁ, ସେତେ ବେଳେ ମୁଁ ଅବଶ୍ୟ ତୋର ଭରଣପୋଷଣ ପାଇଁ ଦାୟୀ । ମୁଁ ଦାନ କରୁ ନାହିଁ, କନ୍ୟାକୁ ଯୌତୁକ ସ୍ୱରୂପ ଦେଉଛି ।

ଏତିକି କହି ପଣ୍ଡା ମହାଶୟ ଘରକୁ ପ୍ରସ୍ଥାନ କଲେ । ଯିବାବେଳେ କହିଗଲେ, ସେ ତିନି ଚାରିଦିନ ପରେ ଶୈଳଜାକୁ ନିଜ ଘରକୁ ନେବା ପାଇଁ ଲୋକ ପଠାଇବେ । ତାଂକ ପତ୍ନୀଂକର ଇଚ୍ଛା, ଧର୍ମ ଝିଅକୁ ଦିନେ ଭଲ କରି ଖୁଆଇବେ ।



# ତ୍ରୟୋଦଶ ପରିଚ୍ଛେଦ

"ଦୁଃଖରେ ପଡିଣ ଯେହୁ ଧର୍ମ ନ ଭୁଲଇ.

ସୁଖରେ ହିଲ୍ଲୋଳେ ସେହୁ ଅଚିରେ ଭାସଇ ।"

ଶୈଳଜାର ଯେପରି ଦୁଃଖର ସୀମା ନ ଥିଲା ଏବେ ସେହିପରି ସୁଖର ସୀମା ନାହିଁ । ଆଜି ସେ ତାର ସ୍ୱାମୀର ଶାନ୍ତିର ସଂସାରରେ ଗୃହିଣୀ, ସର୍ବ ବିଷୟରେ ସ୍ୱାଧୀନା, ସର୍ବଦା ଶାନ୍ତିମୟୀ । ତାର ଅନ୍ଧକାର ଜଗତ ଆଲୋକମୟ ହୋଇଛି । ଦୁଃଖର ରଜନୀ ପାହି ସୁଖର ଦିନ ହସି ଉଠୁଛି । ଅନ୍ଧକାର ପରେ ଆଲୋକ ଯେଉଁପରି ଶୋଭାପ୍ରଦ, ବର୍ଷା ପରେ ଖରା ଯେପରି ସ୍ଫୁର୍ତ୍ତିଜନକ, ସେହିପରି ଦୁଃଖ ପରେ ସୁଖ ଅତି ଶାନ୍ତିଦାୟକ - ଏ କଥା ସତ୍ୟ । ନଟବର ସମସ୍ତ ପୈତୃକ ସମ୍ପତ୍ତି ହରାଇ ନିଃସ୍ୱ ହୋଇ ପଡିଛନ୍ତି; କିନ୍ତୁ ତାଙ୍କର ସଂସାର ବଡ ସୁଖର ଚାଲିଛି । ସଂସାର ଖଣ୍ଡିଏ ନୌକା ସ୍ୱରୂପ: ସ୍ୱାମୀ ସ୍ତ୍ରୀ ସେଥିରେ କେଉଟ କତୁଆ । କେଉଟ କତୁଆ ମଧ୍ୟରେ ପରସ୍ପର ସାମଞ୍ଜସ୍ୟ ନ ଥିଲେ ନୌକା ଚାଲିପାରେ ନାହିଁ । କେଉଟ ଗୋଟିଏ ପାଖକୁ ଟାଣୁଛି ତ କତୁଆ ଆଉ ଗୋଟିଏ ଦିଗକୁ ଟାଣୁଛି: ଏପରି ହେଲେ ନୌକା କେବେ ଚାଲିପାରେ ନାହିଁ: ବରଂ ଘୁରଣୀରେ ପଡି ବୁଡିଯାଏ । ଆଉ କେଉଟ କତୁଆ ଯଦି ମିଳିମିଶି ଯଥାଯଥା ଚଳାନ୍ତି, ତେବେ ନୌକା ସ୍ୱଚ୍ଛନ୍ଦରେ ଚାଲେ । ଏହି ସଂସାରରେ ମଧ୍ୟ ଯଦି ସ୍ୱାମୀ ସ୍ତ୍ରୀ ମିଳିମିଶି ଘର ଚଳାଉଥାନ୍ତି, ତେବେ ସଂସାର କେଡେ ସ୍ୱଚ୍ଛନ୍ଦରେ ଚାଲେ । ନଟବର ଏବେ ଗୁଣବତୀ ଭାର୍ଯ୍ୟାର ଗୁଣ ବୁଝି ପାରିଛନ୍ତି । ସେ ଶୈଳଜାର ଗୁଣରେ ମୁଗ୍ଧ ହୋଇଛନ୍ତି । ଏବେ ତାହାଙ୍କୁ ଦେଖିଲେ, ଯେହି ନଟବର କି ଅନ୍ୟ ନଟବର ବୋଲି ଭ୍ରମ ହୁଏ ।

ଶୈଳଜାର ଶାଶୁ ଏବେ ପୁତ୍ରବଧୂକୁ ଗୃହର ଲକ୍ଷ୍ମୀ ବୋଲି ବୁଝି ପାରିଛନ୍ତି । ଯାହାକୁ ସେ ଶତ୍ରୁରୁ ଅଧିକ ଯନ୍ତ୍ରଣା ଦେଇଛନ୍ତି, ଏବେ ସେ ତାହାକୁ କନ୍ୟାରୁ ଅଧିକ ସ୍ନେହ କରନ୍ତି । ଯାହାକୁ ସେ ସମସ୍ତ ଦିନ ପରିଶ୍ରମ କରାଇ ମଧ୍ୟ ସନ୍ତୁଷ୍ଟ ହେଉ ନ ଥିଲେ, ଏବେ ତାହାକୁ ସର୍ବଦାହିଁ କହନ୍ତି, "ମା, ଏତେ ପରିଶ୍ରମ କଲେ ଜଣ ମଣିଷ ବଞ୍ଚେ ? ଟିକିଏ ବିଶ୍ରାମ କର ।" ଯାର ଗୁଣ ଥାଏ, ଶତ୍ରୁ ମଧ୍ୟ ତାକୁ ଆଦର କରେ ।

ତା ପରେ ଲକ୍ଷ୍ମୀ - ଲକ୍ଷ୍ମୀ ଭାଉଜର ଯେପରି ପରମ ବିଦ୍ୱେଷିଣୀ ଥିଲା, ଏବେ ସେହିପରି ପରମ ହିତୈଷିଣୀ ସଖି ହୋଇଛି । ନ ହେବ କାହିଁକି ? ଶୈଳଜାକୁ ଲକ୍ଷ୍ମୀ

ଯେପରି ଯନ୍ତ୍ରଣା ଦେଇଛି, ଏହି ଜଗତରେ ସେପରି ଯନ୍ତଣା ମନୁଷ୍ୟ ମନୁଷ୍ୟକୁ ଦେଇ ପାରେ ନାହିଁ । ତାର ପରିବର୍ତ୍ତରେ ଶୈଳଜା ପ୍ରାଣପଣେ ଯତ୍ନରେ ନିଜର ଅଳଙ୍କାର ବିକ୍ରୟ କରି ଲକ୍ଷ୍ମୀର ଦୁଶ୍ଚିକିତ୍ସ୍ୟ ରୋଗର ଚିକିତ୍ସା କରାଇଛି । ସେ ଯେତେବେଳେ ଅନାହାରରେ ମରୁଥିଲା । ସେତେବେଳେ ସାଦର ଆହାର ଦେଇ ବଞ୍ଚାଇଛି । ଲକ୍ଷ୍ମୀ ବୁଝିଛି, ତାର ଭ୍ରାତୃବଧୂ ଲକ୍ଷ୍ମୀ, ଦେବୀ, ସେ ନିଜେ ପିଶାଚୀ । ସେ କେବଳ ଭାବେ, ସେ ଯେପରି ଦେବୀକୁ କଷ୍ଟ ଦେଇଛି, କଣ କଲେ ତାର ପ୍ରାୟଶ୍ଚିତ ହେବ । ଲକ୍ଷ୍ମୀ ଏବେ ଶୈଳଜାର ଦାସୀ ହୋଇଛି । ଯାହାକୁ ବଳରେ ବାଧ୍ୟ କରାହୁଏ, ତାହା ସଙ୍ଗରେ ମନର ମେଳ ପ୍ରାୟ ହୁଏ ନାହିଁ । ଯାହାକୁ ଗୁଣରେ ବାଧ୍ୟ କରାଯାଏ, ସେ ନିଜେ ଆସି ପ୍ରାଣମନ ସମର୍ପଣ କରେ । ଲକ୍ଷ୍ମୀ ଶୈଳଜାର ଗୁଣରେ ବାଧ୍ୟ ହୋଇଛି: ସେ ଏବେ ଶୈଳଜାର ଆଜ୍ଞାକାରିଣୀ ।

ଲକ୍ଷ୍ମୀର ରୋଗ ଭଲ ହେଲାଣି: ସେଥି ସଙ୍ଗରେ ତାର ସ୍ୱଭାବ ମଧ୍ୟ ବଦଳି ଯାଇଛି । ସତୀ ଶୈଳଜାର ସଂସର୍ଗରେ ଲକ୍ଷ୍ମୀର ଚରିତ୍ର କ୍ରମେ କ୍ରମେ ମଧୁର ହୋଇ ଯାଉଛି । କ୍ରମେ ଶୈଳଜା ତାକୁ ବୁଝାଇଛି, ସ୍ୱାମୀର ସେବା କରି ନ ପାରିଲେ ସ୍ତ୍ରୀ - ଜୀବନ ବୃଥା, ସ୍ୱାମୀର ସ୍ନେହ ବ୍ୟତୀତ ସ୍ତ୍ରୀ-ଜୀବନରେ ଆଉ ସୁଖ ନାହିଁ - ଲକ୍ଷ୍ମୀ ତାହା ବୁଝି ପାରିଛି । ସ୍ୱାମୀ ଘରକୁ ଯିବାକୁ ଲକ୍ଷ୍ମୀର ଇଚ୍ଛା ହେଉଛି; କିନ୍ତୁ ତାର ସ୍ୱାମୀ ତା'କୁ ଦୁଷ୍ଟା ବୋଲି ଯେତେ ବେଳେ ତ୍ୟାଗ କରି ଦ୍ୱିତୀୟ ପତ୍ନୀ ଗ୍ରହଣ କରିଛନ୍ତି, ତାହାକୁ ଆଉ ଗ୍ରହଣ କରିବେ କାହିଁକି ?

ଶୈଳଜା ଲକ୍ଷ୍ମୀର ସ୍ୱାମୀଙ୍କ ପାଖରୁ ଥରେ ସୋନପୁରକୁ ଆସିବାକୁ ପତ୍ର ଲେଖିଲା । ଲକ୍ଷ୍ମୀର ସ୍ୱାମୀଙ୍କ ନାମ କୁଞ୍ଜବିହାରୀ ନନ୍ଦ । କୁଞ୍ଜବିହାରୀ ବାବୁ ଖୁବ୍ ସଚ୍ଚରିତ୍ର, ବୁଦ୍ଧିମାନ ପୁରୁଷ । ସେ ଶୈଳଜାର ଗୁଣର କଥା ଶୁଣିଛନ୍ତି । ଶୈଳଜାକୁ ଦେଖିବାକୁ ତାଙ୍କର ଇଚ୍ଛା ହେଲା । ସେ ସୋନପୁରକୁ ଆସିଲେ । ଶୈଳଜାର ଯତ୍ନ ଓ ଅଭ୍ୟର୍ଥନାରେ ତାହାଙ୍କୁ ତିନି ଚାରିଦିନ ସେଠାରେ ରହିବାକୁ ହେଲା । ସେତେବେଳେ ଶୈଳଜା ଅନୁରୋଧ କଲା, ଲକ୍ଷ୍ମୀକୁ ଗ୍ରହଣ କରିବାକୁ ହେବ । କୁଞ୍ଜବିହାରି ବାବୁ ପ୍ରଥମରେ ଅସ୍ୱୀକାର କଲେ: ଶୈଳଜା କାହିଁରେ ହିଁ ଛାଡିଲା ନାହିଁ । କହିଲା, ତାର ସ୍ୱଭାବ ଭଲ ହୋଇଛି । ଆଗେ ବାଳିକା ଥିଲା ବୋଲି କିଛି ବୁଝୁ ନ ଥିଲା: ଏବେ ବୁଝି ପାରିଛି । ଏବେ ଯଦି କୌଣସି ଦୋଷ ଦେଖିବାକୁ ପାନ୍ତି, ତେବେ ପୁଣି ତ୍ୟାଗ କରିବେ । ବିଶ୍ୱାସ ନ ହେଉଛି ବୋଇଲେ ଏଠାରେ କିଛିଦିନ ରହି ପରୀକ୍ଷା କରି ନିଅନ୍ତୁ ।"

କୁଞ୍ଜବିହାରୀ ବାବୁ ଅଗତ୍ୟା ତହିଁରେ ସମ୍ମତ ହେଲେ । ଦୁଇ ଚାରିଦିନ ପରୀକ୍ଷା କରି ଦେଖିଲେ, ଯଥାର୍ଥରେ ଲକ୍ଷ୍ମୀ ଏବେ ସେ ଲକ୍ଷ୍ମୀ ନୁହେଁ । ଲକ୍ଷ୍ମୀ ସ୍ୱାମୀଙ୍କ ପାଦ ଧରି କ୍ଷମା ଚାହିଁଲେ । କୁଞ୍ଜବିହାରୀ ବାବୁ ପତ୍ନୀକୁ ଗ୍ରହଣ କରିବାକୁ ଅସ୍ୱୀକାର କଲେ ନାହିଁ । କିଛି ଦିନ ପରେ ଲକ୍ଷ୍ମୀକୁ ଘରକୁ ନେଇଗଲେ ।

ଶୈଳଜାକୁ କିଛି ଦିନ ଟିକିଏ ଅର୍ଥ-କଷ୍ଟ ସହ୍ୟ କରିବାକୁ ହୋଇଥିଲା । ଏବେ ଆଉ କୌଣସି କଷ୍ଟ ନାହିଁ । ନଟବରଙ୍କ ଗୋଟିଏ ଚାକିରୀ ହୋଇଛି । ସେ ଯାହା ପଆନ୍ତି, ତହିଁରେ ତାଙ୍କର ସଂସାର ସ୍ୱଚ୍ଛନ୍ଦରେ ଚଳେ । ଶୈଳଜା ପରମ ସୁଖରେ ଘରସଂସାର ନିର୍ବାହ କରେ; ମଝିରେ ମଝିରେ ବ୍ରତନିୟମାଦି କରି ପଡା ପ୍ରତିବାସୀମାନଙ୍କୁ ଆପ୍ୟାୟିତ କରେ । ଗରିବ ଦୁଃଖୀମାନଙ୍କୁ ଦୁଇ ଚାରି ପଇସା, ଖଣ୍ଡିଏ ଦୁଇଖଣ୍ଡ ଲୁଗା ଦାନ କରେ । ତାହା ଛଡା କିଛି ସଞ୍ଚୟ ମଧ କରେ । ସଂସାରରେ କେତେ କଣ ଖର୍ଚ୍ଚ ହୁଏ, ନଟବର ସେ କଥା ବୁଝନ୍ତି ନାହିଁ ।

ଶୈଳଜାର ଗୋଟିଏ କନ୍ୟା ହୋଇଛି । ସୁଖ ସମୟରେ କନ୍ୟାଟି ପାଇ ଶୈଳଜା ଆଦର କରି ନାମ ରଖିଛି "ସୁଖମୟୀ" । ନଟବର କନ୍ୟାଟିର ଦେଢ଼ ମାସ ବୟସ ସମୟରେ ଘରୁ ଚାକିରୀ ସ୍ଥାନକୁ ଯାଇଥିଲେ । ଏବେ ସୁଖମୟୀର ବୟସ ଆଠ ମାସ ହେଲାଣି । ନଟବର ଆଜି ଘରକୁ ଆସିଛନ୍ତି । ଶୈଳଜା ପରମ ଆହ୍ଲାଦରେ ହସି ହସି କନ୍ୟାଟି ସ୍ୱାମୀଙ୍କ କୋଳରେ ଦେଲା । ନଟବର ପରମାନନ୍ଦରେ କନ୍ୟାର ମୁଖ ଚୁମ୍ବନ କଲେ । ଅନେକ କଥା ପରେ ଶୈଳଜା କହିଲା, "ସୁଖମୟୀର ଅନ୍ନପ୍ରାଶନ ହେବ । ଏହି ଅଷ୍ଟମ ମାସ ପ୍ରଶସ୍ତ ସମୟ ।" ନଟବର କହିଲେ, "ମୁ ମଧ ସେପରି ଭାବୁଛି ।"

ସେତେବେଳେ ଶୈଳଜା କନ୍ୟାର ଅନ୍ନପ୍ରାଶନରେ କି କି ଉତ୍ସବ କରିବାକୁ ହେବ, ତାହା ସ୍ୱାମୀଙ୍କ ପାଖରେ କହିବାକୁ ଲାଗିଲା । ଦୁଇ ଫୁଙ୍କା ବାଜା ଆସିବ, କିଛି ବାଣ ପୋଡାଇବାକୁ ହେବ: ଗ୍ରାମବାସୀ ସମସ୍ତଙ୍କୁ ନିମନ୍ତ୍ରଣ କରିବାକୁ ହେବ: ଏମାନଙ୍କୁ, ସେମାନଙ୍କୁ ଜଳପାନ ଦେବାକୁ ହେବ, ଲକ୍ଷ୍ମୀକୁ, ବିମଳାକୁ, ତାର ତିନି ଭ୍ରାତୃବଧୂଙ୍କୁ ଆଣିବାକୁ ହେବ । ସେ ପଡାର ଧର୍ମମାଆକୁ ନିମନ୍ତ୍ରଣ କରବାକୁ ହେବ ଇତ୍ୟାଦି କେତେ କଥା ହେଲା - ନଟବର ସମସ୍ତ କଥାରେ ସମ୍ମତ ହେଲେ । ଶୁଭଦିନ ସ୍ଥିର ହେଲା ।

ଏପରି ସମୟରେ ଦରୋଟି ସ୍ୱରରେ "ମାଁ, ମାଁ ବୋଲି ଦୁଇ ବର୍ଷ ବୟସ୍କ ଗୋଟାଏ ଅତି ସୁନ୍ଦର ମଧୁର ଶିଶୁ ଧାଇଁ ଆସି ଶୈଳଜାର କୋଳରେ ବସିଲା । ନଟବର ପଚାରିଲେ, "ଏହିଟା କିଏ ?"

ଶୈଳଜା କହିଲା, "ଏହିଟି ନନ୍ଦ ଘରର ବଳରାମ ବାବୁଙ୍କ ପୁଅ । ତା'ର ମା ଏହି ଛଅମାସ ହେଲା ମରିଯାଇଛି । ବଳରାମ ବାବୁଙ୍କ ସଂସାରରେ ଆଉ କେହି ନାହାନ୍ତି । କିଏ ଏହି ମାତୃହରା ଶିଶୁର ପ୍ରତିପାଳନ କରିବ ? ମାଆ ମରିଗଲା ପରେ ପିଲାଟି ତିନି ଚାରିଦିନ ଧରି କେବଳ କାନ୍ଦିବାକୁ ଲାଗିଲା, କାହାରି କଥାରେ ଶାନ୍ତି ହୁଏ ନାହିଁ: କେହି କିଛି ଖାଇବାକୁ ଦେଲେ ଖାଏ ନାହିଁ । କେବଳ ମା,ମା କରି କାନ୍ଦୁଥାଏ, ଆଉ ଚକ୍ଷୁ ଜଳରେ ବକ୍ଷ ଭାସି ଯାଉଥାଏ । ଆହା ସେ ସମୟରେ ତାକୁ ଦେଖିଲେ. ଶତ୍ରୁର ଚକ୍ଷୁରେ ମଧ୍ୟ ପାଣି ଆସିବ ।"

ଶୈଳଜାର ଚକ୍ଷୁ ଛଳଛଳ ହେଲା । ସସ୍ନେହରେ ମାତୃହୀନ ପିଲାଟିର ମୁଖ ଚୁମ୍ବନ କରି ଫେରି କହିଲା, "ଆହା ! ଯାରି ପରି ଦୁଃଖୀ ଆଉ କିଏ ଅଛି ? ଧନ ମୋର ଜନମ ଦୁଃଖୀ । ଇମିତି ବ-ୟ-ସରେ ଯାର ମାଆ ଛାଡିଯାଏ, ତାର ଦୁଃଖରେ କ'ଣ ଆଉ ସୀମା ଅଛି ? ତାର ଆଈ ତାକୁ କୋଳରେ ଘେନି ଆମ୍ଭ ଘରକୁ ଆସିଥିଲେ । ମୁଁ ଆଦର କରି କୋଳରେ ଘେନି ଦୁଧ ଦେବାକୁ ଗଲି । ଦୁଧର ପିଲା କେତେ ଦିନ ଖାଇ ନାହିଁ, ମୋ କୋଳରେ ଦୁଧ ଖାଇ ଟିକିଏ ଶାନ୍ତ ହେଲା । ତା'ପରେ ମୋର ମୁହଁ ଆଡକୁ ଚାହିଁ "ମା, -ମା" ବୋଲି ଡାକିବାକୁ ଲାଗିଲା । ମୋର ମନରେ ଦୁଃଖ ହେଲା । ମତେ ଛାଡି ଆଉ ଯିବାକୁ ଚାହିଁଲା ନାହିଁ । ଏବେ ମୋ ପାଖରେ ଥାଏ; ମତେ "ମା" ବୋଲି ଡାକେ । ନିଜର ମା ଆଉ ମନେ ନାହିଁ । ମୁଁ ଯାର ପାଇଁ ଗୋଟିଏ ପୋଷାକ ଆଣିବାକୁ ଲେଖିଥିଲି, ଆଣିଛ କି ?

ପରର ସନ୍ତାନ ପ୍ରତି ଶୈଳଜାକୁ ଏପରି ସ୍ନେହଶୀଳା ଦେଖି ନଟବର ମନେ ମନେ ପତ୍ନୀକୁ ସାଧୁବାଦ ପ୍ରଦାନ କଲେ । କୋଟପେଣ୍ଟ ଖୋଲି ଗୋଟିଏ ଅତି ସୁନ୍ଦର ସାଟିନ ପୋଷାକ ବାହାର କରି ଦେଲେ । ଶୈଳଜା ପରମା ନନ୍ଦରେ ପିଲାଟିକୁ ପୋଷାକ ପିନ୍ଧାଇ କହିଲା, "ବସନ୍ତ ! ବହୂ ଆଣି କାହାକୁ ଦେବୁ ? ଆନନ୍ଦରେ ଶିଶୁ ହସି ହସି କହିଲା: "ତୁମ୍ଭଙ୍କୁ । ଶୈଳଜା ତାର ମୁଖ ଚୁମ୍ବନ କଲା: ବସନ୍ତ ଶୈଳଜାର ଗଳା ଭିଡି ଜଡାଇ ଧରି ହସିବାକୁ ଲାଗିଲା ।

ଯାହାର ହୃଦୟରେ ସ୍ନେହ ଅଛି, ପରର ସନ୍ତାନକୁ ସେ ଆପଣାର କରି ନେଇ ପାରେ । ମାତା ହୋଇ ଜାଣିଲେ, ସନ୍ତାନର ଅଭାବ କ'ଣ ? ନିଜର ସନ୍ତାନ ପ୍ରତି ପଶୁମାନ ମଧ୍ୟ ସ୍ନେହ କରି ଥାଆନ୍ତି: ପରର ସନ୍ତାନ ପ୍ରତି ସେ ସ୍ନେହ କରି ପାରନ୍ତି, ସେ ହିଁ ଯଥାର୍ଥ ମାତା, ସେହି ଦେବୀ !



# ଚତୁର୍ଦ୍ଦଶ ପରିଚ୍ଛେଦ

"ଯେତେ ଦୁଃଖ ତେତେ

ସୁଖ ଏହି କଥା ସାର,

ଦୁଃଖ ପରେ ସୁଖ ଏହା ବିଧିର ବିଚାର ।"

କ୍ରମେ ଅନ୍ନପ୍ରାଶନ ଦିନ ଆସିଲା । ଆଜି ଅଧିବାସ ! ଦୁଇ ଦଳ ବାଜଣାଦାର ନହବତରେ ଚଢ଼ି ଯୁଦ୍ଧ କରି ରୋଷନ ଚୌକା ବଜାଉଛନ୍ତି । ଅନବରତ ବାଣ ଫୁଟୁଛି; ମଧରେ ମଧରେ ରହି ରହି ବନ୍ଧୁକ ଫୁଟୁଛି । ସଦରରେ ସଭା ବସିଛି । ଡ଼ାସଗଞାପାର ଆମୋଦ ଲାଗିଛି । ପିଲାମାନେ ଧାଆଁ ଧୂପା କରୁଛନ୍ତି, ହକ୍କା ହକ୍କି କରୁଛନ୍ତି । ଆନନ୍ଦରେ ମାଇକିନିଆମାନେ ଖୁବ ଗପ୍ପ ଜମାଇ ଦେଇଛନ୍ତି । କେହି ପାଡି ଚିତ୍ର କରୁଛି, କେହି ଫୁଲ ମାଳ ଗୁନ୍ଥୁଛି । ମଧରେ ମଧରେ ହୁଳ ହୁଳ ଧ୍ୱନି କରୁଛନ୍ତି । ରାତ୍ରି ମଧ ଅତି ପରିଷ୍କାର । ଆକାଶରେ ନିର୍ମଳ ଚନ୍ଦ୍ର ହସୁଛି । ସୁଖର ଦିନରେ ସମୟ ସୁଖମୟ । ଯେଉଁ ପାଖକୁ ଚାହିଁ ଦେଖ, ସେହି ପାଖରେ ଆନନ୍ଦର ସ୍ରୋତ ବହୁଛି ।

ଶୈଳଜା ଓ ଲକ୍ଷ୍ମୀ ବସି ମିଠାଇ ପ୍ରସ୍ତୁତ କରୁଛନ୍ତି, ସମସ୍ତ ନିମନ୍ତ୍ରିତ ବ୍ୟକ୍ତିଙ୍କୁ ଜଳପାନ ଦିଆଯିବ । ଅନେକ ଦିନ ପରେ ଲକ୍ଷ୍ମୀ ସଙ୍ଗରେ ସାକ୍ଷାତ ହୋଇଛି; ଶୈଳଜା ତାକୁ କେତେ କଥା ପଚାରୁଛି । ଶୈଳଜା କହିଲା, "ନାନି ! ତୁମ୍ଭର ସଉତୁଣୀ ସଙ୍ଗରେ ସିମିତି କଳ କଜିଆ ହୁଏ ନାହିଁ ତ ?

ଲକ୍ଷ୍ମୀ - ନା ଭଉଣୀ ହେଲେ କଣ ହେଲା, ସେ ବଡ ଭଲ ଲୋକ । ମତେ ସଉତୁଣୀ ପରି ଦେଖେ ନାହିଁ ।

ଶୈଳ - ଜୁଆଁଇଙ୍କର ଟାଣ କେଉଁ ଆଡକୁ ବେଶି ?

ଲକ୍ଷ୍ମୀ ସେ ଦୁଇଆଡେ ସମାନ ଦେଖନ୍ତି; ତେବେ କ'ଣ ତା' ମଧରେ ଯିମିତି ମୋ ଉପରେ ତାଙ୍କର ଟିକିଏ ବେଶି ନଜର ଅଛି ।

ଏପରି ସମୟରେ ଲକ୍ଷ୍ମୀର ସ୍ୱାମୀ କୁଞ୍ଜବିହାରୀ ବାବୁ ସେଠାରେ ପହଞ୍ଚିଗଲେ । ସ୍ୱାମୀଙ୍କୁ ଦେଖି ଲକ୍ଷ୍ମୀ ଓଢ଼ଣା ଟାଣି ଟିକିଏ ଘୁଞ୍ଚିଗଲେ । କୁଞ୍ଜବିହାରି ବାକୁ ବ୍ୟଙ୍ଗ କରି କହିଲେ, "କଣ ଗୋ ଘୁଞ୍ଚିଯାଉଛ କାହିଁକି ? ସ୍ୱର୍ଣମଣିର ପାଖରେ ପାଖରେ ଥାଅ; ଯେଉଁ ମଇଳା ଟିକକ ଅଛି, ତାହା ସଫା ହୋଇ ଝଳିଉଠିବ ।" ଶୈଳଜା କୁଞ୍ଜବିହାରୀ ବାବୁଙ୍କ କଥା ଭଲ ରୂପେ ବୁଝି ନ ପାରି ହସି କହିଲା, "କଣ ଗୋ ଜୁଆଁଇ ? ନଣନ୍ଦଙ୍କ

ସଙ୍ଗରେ କଣ ରଙ୍ଗ କରା ହେଲା ।" କୁଞ୍ଜବିହାରୀ ବାବୁ କହିଲେ, "କଥାଟା କଣ, ବୁଝିଲ ନାହିଁ ! ତୁମେ ସ୍ୱର୍ଣ୍ଣମଣି, ତୁମ୍ଭର ନଣନ୍ଦ ମରୁଚପଡା ଲୁହା । ସ୍ୱର୍ଣ୍ଣମଣିର ପାଖରେ ରହି ଏବେ ସୁନା ହୋଇଛି ସତ, ତେବେ କିଛି ମଇଳା ଏବେ ସୁଦ୍ଧା ଅଛି । ଆଉ କିଛି ଦିନ ପାଖରେ ରହିଲେ, ବାକୀ ମଇଳାତକ ଛାଡିଯିବ ।"

ଆତ୍ମ-ପ୍ରଶଂସା ଶୁଣି ଶୈଳଜାର ଲଜ୍ଜା ହେଲା । ମୁହଁ ଫେରାଇ କାମରେ ନିଯୁକ୍ତ ହେଲା । କୁଞ୍ଜବିହାରୀ ବାବୁ ଚାଲିଗଲେ । ଟିକିଏ ପରେ ଖିଡିକି ଦରଜାରୁ କିଏ ଡାକିଲା, "ଏ ସୁ !" ଶୈଳଜା ଡାକ ଶୁଣି ଚିହ୍ନିଲା ବିମଳା ଆସଛି । ବିମଳାକୁ ଆଣିବାକୁ ଶୈଳଜା ତାର ଶାଶୁ ଘରକୁ ଲୋକ ଓ ପାଲଙ୍କି ପଠାଇଥିଲା; ବିମଳା ଏତେବେଳ ସୁଦ୍ଧା ଆସି ନାହିଁ ଦେଖି ଚିନ୍ତିତ ହୋଇଥିଲା । ବିମଳାର ଡାକ ଶୁଣି ଶୈଳଜା ଧଡପଡ୍ ହୋଇ ଉଠିଲା । ବିମଳା ଦରଜା ପାଖକୁ ଆସି ପୁଣି ଡାକିଲା, "ସୁ !" ସୁଖର ଆବେଗରେ ଶୈଳଜା ଉତ୍ତରକଲା, "କୁ !" ଶୈଳଜାର ସମ୍ମୁଖରେ ତାର ଝିଅଟି ବସିଥିଲା, ସେ ମଧ୍ୟ କହିଲା, "କୁ !" ବିମଳା ସଙ୍ଗରେ ତା'ର ପୁଅଟି ଆସିଥିଲା, ସେ ମଧ୍ୟ କହିଲା, "ଚୁ !"

ବିମଳା ଆସିଲା । ଶୈଳଜା ଧାଇଁ ଯାଇ ଚିପି ଭିଡି ଧଇଲା । ବିମଳା ଶୈଳଜାର ଦୁଃଖ ସମୟର ସାଥୀ । ଆଜି ସୁଖ ସମୟରେ ତା'ର ଦେଖା ପାଇଛି । ଏତେ ବେଳକୁ ତା'ର ସୁଖ, ତାର ଉତ୍ସବ ପୂର୍ଣ୍ଣତା ପ୍ରାପ୍ତ ହୋଇଛି । ସୁଖର ଆବେଗରେ ଦୁଇ ଜଣ ମିଶି ଦୁଇ ଜଣଙ୍କୁ ଚିପି ଭିଡି ଧରି ଅନେକ ବେଳଯାଏଁ ନୀରବ ରହିଲେ । ଦୁଇ ଜଣଙ୍କର ଚକ୍ଷୁଦେଇ ଲୋତକ ଧାରା ବହୁଥିଲା ।

ଏ ପାଖରେ ଦୁଇ ଟୋକା ଟୋକୀ ଗୋଟାଏ କାଣ୍ଡକଲେ । ବିମଳାର ପୁଅଟିଏ ବୟସ ପାଞ୍ଚ ବର୍ଷ, ତାର ନାମ ଦୀନବନ୍ଧୁ । ମାଆର ଦେଖା ଦେଖି ଦୀନବନ୍ଧୁ ଧଡପଡ କରି ସୁଖମୟୀକୁ ଧରି କୋଳକୁ ଟାଣିନେଲା; ସୁଖମୟ ମଧ୍ୟ ତାର ଗଳା ଚିପି ଦୃଢ଼ରେ ଧଇଲା । ଶୈଳଜା ଓ ବିମଳା ଦୁଇ ଜଣ ମିଶି ପୁତ୍ର କନ୍ୟାର ରଙ୍ଗ ଦେଖି ହସି ଉଠିଲେ । ତାହା ପରେ ବିମଳା କହିଲା, "ବହୂ ! ତତେ ମୋର "ସମ୍ବନ୍ଧିନୀ" ହେବାକୁ ହେବ । ଦେଖ ଦେଖି କିମିତି ମାନୁଛି !" ହସି ହସି ଶୈଳଜା ଉତ୍ତରକଲା, " ପୁଅଝିଅଙ୍କର ସେତେବେଳେ ପୁଷ୍ପବିଭା ହୋଇଗଲା, ସେତେବେଳେ ଆଉ କଥା କଅଣ ?"

ବିମଳା - ତେବେ ସମ୍ବନ୍ଧନୀ ! ମୁଁ ମୋର ପୁତ୍ରବଧୂକୁ କଣ ଯୌତୁକ ଦେବି ? କହି ବିମଳା ଶୈଳଜାର କନ୍ୟାକୁ କୋଳକୁ ନେଇ ସୁନ୍ଦର ସୁନାହାରଟିଏ ତାର ଗଳାରେ

ପିନ୍ଧାଇ ଘନ ଘନ ମୁଖଚୁମ୍ବନ କରିବାକୁ ଲାଗିଲା ।

ଶୈଳଜା ମଧ ବାକ୍ସ ଖୋଲି ଖଣ୍ଡିଏ ବ୍ରହ୍ମପୁରୀ ପାଟ ଓ ସାଟିନ କୁରୁତା ଆଣି ଦୀନବନ୍ଧୁକୁ ପିନ୍ଧାଇଲା, ଥାଳିଏ କ୍ଷୀରମିଠା଼ଇ ଆଣି ଖାଇବାକୁ ଦେଲା । ବିମଳା ଦେଖି କହିଲା, "ସେ କଣ ଏତେ ଖାଇ ପାରିବ ?"

ଶୈଳ - ଜ୍ୱାଁଇଁକୁ ଥାଳି ପୁରାଇ ଦେବାକୁ ହୁଏ, ଜ୍ୱାଁଇ ଖାଇ ନ ପାରିଲେ, ସଙ୍ଗରେ ଯେଉଁମାନେ ଥାଆନ୍ତି, ସେହିମାନେ ଖାଆନ୍ତି । ମୋର ଜ୍ୱାଁଇ ସଙ୍ଗରେ ତାଙ୍କର ମାଆ ଆସିଛନ୍ତି, ଜ୍ୱାଁଇ ନ ପାରିଲେ ସମ୍ବନ୍ଧିନୀଙ୍କୁ ଖାଇବାକୁ ହେବ । ଶୈଳଜା ବିମଳାର ହାତ ଧରି ଥାଳି ପାଖରେ ବସାଇଲା, ବିମଳା ମଧ ଶୈଳଜାକୁ ଖାଇବାକୁ ବାଧ କଲା । ଶୈଳଜା ଆପଣା ଘରେ ସମସ୍ତଙ୍କ ଆଗରେ ଖାଇବାକୁ ସମ୍ମତ ହେଲା ନାହିଁ ।

ତୁମ୍ଭେମାନେ ଏବେ ପୁଅ ଝିଅର ବିଭାଘର କର । ଘରକୁ ଜ୍ୱାଁଇ ଆଣ, ଆମୋଦ ଉତ୍ସବ କର । ଆମ୍ଭେ ଏବେ ବିଦାୟ ହେଉଁ ।



